# ଜାତକ କଥା

( ପ୍ରଥମ ଭାଗ )

ସଂକଳନ :

ଶ୍ରୀ ଭଗୀରଥି ନେପାକ

ପ୍ରକାଶକ :

ଜେ. ମହାପାତ୍ର ଏଣ୍ଡ କୋ.

ଛାତ୍ରସାଥୀ ଅଫିସ

ନିମଚଉଡି, କଟକ-୨

ମୂଲ୍ୟ ଟ ୭-୦୦

# ସୂଚୀପତ୍ର



———


Paper used for the printing of this book was made available by the Govt. of India at the concessional rate.

ଦ୍ୱିତୀୟ ମୁଦ୍ରଣ : ଛାତ୍ରସାଥୀ ପ୍ରେସ, କାଳୀଗଳି, କଟକ-୨ — ୧୯୭୮

# କୁରୁ ଧର୍ମ



ଅତୀତରେ 'ଇନ୍ଦ୍ରପ୍ରସ୍ଥ ନଗରୀ କୁରୁ ସାମ୍ରାଜ୍ୟର ରାଜଧାନୀ ଥିଲା । ସେଠାରେ ରାଜା ଧନଞ୍ଜୟ ରାଜୁତି କରୁଥିଲେ । ବୋଧିସତ୍ତ୍ୱ ତାଙ୍କରି ଘରେ ଜନ୍ମଗ୍ରହଣ କଲେ ଓ ତକ୍ଷଶିଳାରେ ଯାଇ ବିଦ୍ୟାରମ୍ଭ କଲେ । ସେ ସେଇଠି ବିଦ୍ୟାଶିକ୍ଷା ସମାପ୍ତ କରି ସ୍ୱଗୃହ ପ୍ରତ୍ୟାବର୍ତ୍ତନ କରିବା ସଙ୍ଗେ ସଙ୍ଗେ ତାଙ୍କ ପିତା ତାଙ୍କୁ ଯୁବରାଜ ପଦବୀ ଅର୍ପଣ କଲେ ।

ରାଜା ବୃଦ୍ଧ ହୋଇ ମୃତ୍ୟୁବରଣ କରିବା ପରେ ସେ ରାଜ୍ୟର ରାଜା ହେଲେ ଓ ଧର୍ମ ଅନୁସାରେ ଶାସନ କାର୍ଯ୍ୟ ନିର୍ବାହ କଲେ । ରାଜା ସହରର ଚ୍ଚାରେଟିଯାକ ପ୍ରବେଶ ଦ୍ୱାରରେ ଏବଂ ସହର ଭିତରେ ତଥା ରାଜ ନହର ପାଖରେ ଛଅଟି ଧର୍ମଶାଳା ତିଆରି କରାଇ-ଥିଲେ । ପ୍ରତିଦିନ ଏହି ଧର୍ମଶାଳାମାନଙ୍କରେ ଯୋଗ୍ୟ ଯାତ୍ରୀମାନଙ୍କୁ ଛଅ ଲକ୍ଷ ଟଙ୍କା ବିତରଣ କରାଯାଉଥିଲା । ପ୍ରଜାମାନେ ସୁଖରେ ଥିଲେ । ରାଜାଙ୍କର ନ୍ୟାୟ ଓ ଦାନ ଧର୍ମ କଥା ସମଗ୍ର ଭାରତବର୍ଷରେ ପ୍ରସାରିତ ହେଲା ।

ସେହି ସମୟରେ କଳିଙ୍ଗ ରାଜ୍ୟର ଦନ୍ତପୁର ନାମକ ନଗରୀରେ କଳିଙ୍ଗ ରାଜା ରାଜୁତି କରୁଥିଲେ । ଦୁର୍ଭାଗ୍ୟବଶତଃ ସେହି ରାଜ୍ୟରେ ବର୍ଷା ହେଲା ନାହିଁ ଏବଂ ବର୍ଷାବିନା ରାଜ୍ୟରେ ମରୁଡ଼ି ପଡ଼ିଲା । ଲୋକ-ମାନେ ଅନାହାରରେ ମୃତ୍ୟୁମୁଖରେ ପଡ଼ିଲେ । ଭୋକରେ ସେମାନେ ଅଖାଦ୍ୟ ଭକ୍ଷଣ କଲେ ଓ ରୋଗରେ ପଡ଼ିଲେ । ପ୍ରଜାମାନେ ନିଜର ସନ୍ତାନସନ୍ତତିମାନଙ୍କୁ ସଙ୍ଗରେ ନେଇ ଘର ଛାଡ଼ି ଇତସ୍ତତଃ ହେଲେ । ସେମାନଙ୍କ ମଧ୍ୟରୁ କେତେକ ଦନ୍ତପୁରରେ ପହଞ୍ଚି ରାଜନଅର ସମ୍ମୁଖରେ ଗୋଳମାଳ କଲେ ।

ରଜା ନଅର ବାହାରେ ପାଟିତୁଣ୍ଡ ହେଉଥିବା ଶୁଣି ଫାଟକ ପାଖକୁ ଆସିଲେ ଏବଂ ସେହି ଲୋକମାନଙ୍କର ଗୋଳମାଳର କାରଣ ଜିଜ୍ଞାସା କଲେ ।

ସେ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସଭାସଦ୍‌ମାନେ କହିଲେ, ମହାରାଜ, ବର୍ଷା ଅଭାବରୁ ଫସଲ ହେଲା ନାହିଁ । କ୍ଷେତରେ ପାଣି ନାହିଁ । ଲୋକମାନେ ଅଖାଦ୍ୟ ଖାଇ ରୋଗରେ ପଡ଼ିଲେ ଓ ଘରଦ୍ୱାର ଛାଡ଼ି ଇତସ୍ତତଃ ହେଲେ ।

ରଜା ପ୍ରଶ୍ନ କଲେ, ତାହାହେଲେ ଏମାନଙ୍କ କଷ୍ଟ ଦୂର ହେବ କେମିତି ?

ସଭାସଦ୍‌ମାନେ କହିଲେ, ବର୍ଷା ହେଲେ ଯାଇ ସମସ୍ତଙ୍କର କଲ୍ୟାଣ ହେବ ।

କିଛିକ୍ଷଣ ଚିନ୍ତା କରିବା ପରେ ରଜା ପ୍ରଶ୍ନ କଲେ,- ଏଇ ପ୍ରଥମ ଥର ପାଇଁ ଯେ ବର୍ଷା ହେଉ ନାହିଁ, ଏପରି ନୁହେ । ଇତିପୂର୍ବରୁ ଅନ୍ୟ ରଜାମାନଙ୍କ ଅମଳରେ ବି ଏପରି ଘଟୁଥିଲା । ବର୍ଷା ନ ହେଲେ ଅନ୍ୟ ରଜାମାନେ କଣ କରୁଥିଲେ ?

ସଭାସଦ୍‌ମାନେ ଉତ୍ତର ଦେଲେ, ମହାରାଜ ! ଏଭଳି ଦୁର୍ଗତି ପଡ଼ିଲେ ସର୍ବପ୍ରଥମେ ରଜା ନିଜ ପାଖରେ ଥିବା ସମସ୍ତ ସମ୍ପତ୍ତି ଦାନ କରି ଦେଉଥିଲେ । ତାପରେ ବ୍ରତଧାରଣ ପୂର୍ବକ ଏକ ସପ୍ତାହବ୍ୟାପୀ ତୃଣଶଯ୍ୟାରେ ଶୟନ କରୁଥିଲେ । ଏପରି କଲେ ବର୍ଷା ହେଉଥିଲା ।

ରଜା ଏହା ଶୁଣି ଉତ୍ତର ଦେଲେ, ଏପରି କରିବା ବଡ଼ କଥା ନୁହେ । ମୁଁ ମଧ୍ୟ ସେହିପରି କରିବି ।

ରଜା ସଭାସଦ୍‌ମାନଙ୍କ କହିବା ଅନୁଯାୟୀ ସମଗ୍ର ସମ୍ପତ୍ତି ବଣ୍ଟନ କଲେ ଓ ବ୍ରତଧାରଣ ପୂର୍ବକ ଏକ ସପ୍ତାହକାଳ ତୃଣଶଯ୍ୟାରେ ଶୟନ କଲେ । ତଥାପି ବର୍ଷା ହେବା ତ ଦୂରର କଥା, ଆକାଶରେ ମେଘ ଟୁକା ଦେଖା ଦେଲା ନାହିଁ । ଏହା ଦେଖି ରଜା ନିଜ ମିତ୍ରମାନଙ୍କୁ ଡକାଇ ମନ୍ତ୍ରଣା କରିବାକୁ ଲାଗିଲେ । କହିଲେ, ମୋର ଯାହା କରିବା କଥା କଲି, ତଥାପି ବର୍ଷା ହେଲା ନାହିଁ । ବର୍ତ୍ତମାନ ମୋତେ କ'ଣ କରିବାକୁ ହେବ ?

ଏହା ଶୁଣି ସଭାସଦ୍‌ମାନେ କହିଲେ, ମହାରାଜ ! ଇନ୍ଦ୍ରପ୍ରସ୍ଥ ନାମକ ଏକ ସହର ଅଛି । ସେଇଠି ଧନଞ୍ଜୟ ନାମକ ଜଣେ ରଜା ରଜୁତି କରୁଥିଲେ । ବର୍ତ୍ତମାନ ତାଙ୍କ ପୁତ୍ର ସେଇଠି ରଜୁତି କରୁଛନ୍ତି । ସେଇଠି ଅଞ୍ଜନ-ବାସବ ନାମରେ ଗୋଟିଏ ମଙ୍ଗଳହସ୍ତୀ ଅଛି । ଯଦି ସେହି ହସ୍ତୀକୁ ଏଠାକୁ ଅଣାଯାଇ ପାରିବ, ତାହାହେଲେ ମଙ୍ଗଳ ହେବ ଓ ବର୍ଷା ବି ହେବ ।

ରାଜା କହିଲେ, ମୁଁ ମାନୁଛି, ସେହି ମଙ୍ଗଳହସ୍ତୀ ଏଠାକୁ ଆସିଲେ ବର୍ଷା ହେବ । କିନ୍ତୁ ସେଠାକାର ରାଜା ତାକୁ ଦେବେ ବା କାହିଁକି ? ତାଙ୍କ ପାଖରେ ସିପାହୀ, ଫୌଜ ନିଶ୍ଚୟ ଥିବେ । ପୁଣି ମୁଁ ଶୁଣିଛି ସେହି ରାଜା ଅତ୍ୟନ୍ତ ବଳଶାଳୀ ଅଟନ୍ତି ।

ଏହା ଶୁଣି ସଭାସଦ୍‌ମାନେ ଉତ୍ତର ଦେଲେ, ମହାରାଜ ! ଆମେ କଣ ଆପଣଙ୍କୁ ସେହି ରାଜ୍ୟକୁ ଯାଇ ଯୁଦ୍ଧ କରିବାକୁ କହୁଛୁ ? ଯୁଦ୍ଧ କଲେ କୌଣସି କାମ ହୁଏ ନାହିଁ । ଶୁଣିଛୁ, ସେ ରାଜା ଅତ୍ୟନ୍ତ ଦାନ-ଶୀଳ ଅଟନ୍ତି । ତାଙ୍କୁ ଯିଏ ଯାହା ମାଗେ, ନିରାଶ ହୁଏ ନାହିଁ । ଏପରିକି, ଯଦି କେହି ଯାଇ ତାଙ୍କୁ ଆଖି ମାଗିବ, ସେ ତାକୁ ମଧ୍ୟ ଦାନ କରି-ଦେବେ । ରାଜ୍ୟ ମାଗିଲେ, ରାଜ୍ୟ ମଧ୍ୟ ଦେବେ । ଏପରିକି ଶୁଣିଛୁ, ଯଦି କୌଣସି ବ୍ୟକ୍ତି ବିବିଧ ରତ୍ନସୁସଜ୍ଜିତ ତାଙ୍କର ମସ୍ତକ ଦାନ ମାଗିବ, ସେ ନିଜ ମସ୍ତକ ଛେଦନ କରି ତାକୁ ଦାନ କରିବେ । ତା' ତୁଳନାରେ ହାତୀ ଅତି ଛୋଟ ଜିନିଷ । ବିଶେଷତଃ ଯଦି ସେ ଶୁଣିବେ ଯେ, ଏ ରାଜ୍ୟରେ ଅକାଳ ପଡ଼ିଛି ଏବଂ ରାଜ୍ୟର ସମସ୍ତେ ଦୁଃଖ ଭୋଗ କରୁଅଛନ୍ତି, ତାହା ହେଲେ ସେ ତୁରନ୍ତ ହସ୍ତୀ ଦାନ କରି ଦେଇ ପାରନ୍ତି ।

ରାଜା ପ୍ରଶ୍ନ କଲେ, ଆଚ୍ଛା ତାଙ୍କ ପାଖକୁ ମାଗିବାକୁ ଯିବ କିଏ ସେ ? କଣ ମୋତେ ହିଁ ଯିବାକୁ ପଡ଼ିବ ?

ସଭାସଦ୍‌ମାନେ ଏହା ଶୁଣି ଉତ୍ତର ଦେଲେ, ନାଁ ମହାରାଜ ! ଆପଣ ଯିବେ କାହିଁକି ? ଦାନ ମାଗିବା ପାଇଁ ବ୍ରାହ୍ମଣମାନଙ୍କୁ ପଠାଇବା ।

ଏହା ଶୁଣି ରାଜା ନିଜ ରାଜ୍ୟର ବ୍ରାହ୍ମଣମାନଙ୍କୁ ଡକାଇଲେ ଏବଂ ସେହି ବ୍ରାହ୍ମଣମାନଙ୍କ ମଧ୍ୟରୁ କେବଳ ଆଠ ଜଣଙ୍କୁ ବାଛି ଦେଶର ପରିସ୍ଥିତି କଥା ବୁଝାଇ ଦେଲେ । କହିଲେ, ରାଜ୍ୟର ମଙ୍ଗଳ ପାଇଁ ତୁମେ ଯାଇ ହାତୀକୁ ମାଗି ଆଣ ।

ବ୍ରାହ୍ମଣମାନେ ରାଜାଙ୍କ କଥାରେ ରାଜି ହେଲେ । ସେମାନେ ଯାତ୍ରାପାଇଁ ବେଶ ଭୂଷଣ ପ୍ରସ୍ତୁତ କଲେ ଓ ରାସ୍ତା ଖର୍ଚ୍ଚ ନେଇ ଯାତ୍ରା ଆରମ୍ଭ କଲେ । ରାସ୍ତାପଥରେ ବିଳମ୍ବ ନ କରି ସେମାନେ ଯଥାଶୀଘ୍ର କୁରୁ ରାଜ୍ୟରେ ପ୍ରବେଶ କଲେ ଏବଂ ପହୁଞ୍ଚିବା ସଙ୍ଗେ ସଙ୍ଗେ ଖବର ନେଲେ, ରାଜା କେବେ ଧର୍ମଶାଳାକୁ ଯାଆନ୍ତି । ଜଣାଗଲା ଯେ, ରାଜା ପନ୍ଦର ଦିନ ମଧ୍ୟରେ ତିନିଥର ଅର୍ଥାତ୍ ଅଷ୍ଟମୀ, ଚତୁର୍ଦ୍ଦଶୀ ଏବଂ ପୂର୍ଣ୍ଣମୀ ଦିନ ଧର୍ମଶାଳାକୁ ଯାଆନ୍ତି ।

ସୌଭାଗ୍ୟକ୍ରମେ ସେମାନଙ୍କ ଖବର ନେବାର ପରଦିନ ପୂର୍ଣ୍ଣମୀ ଥିଲା ଓ ପୂର୍ଣ୍ଣମୀଦିନ ରାଜା ଧର୍ମଶାଳାକୁ ଆସିବା କଥା । କଳିଙ୍ଗର ବ୍ରାହ୍ମଣମାନେ ସହରର ଦକ୍ଷିଣ ଦ୍ୱାରକୁ ଗଲେ ଓ ରାଜାଙ୍କର ପ୍ରତୀକ୍ଷା କରିବାକୁ ଲାଗିଲେ । ରାଜା ପହୁଞ୍ଚିବା ମାତ୍ରେ ସେମାନେ ରାଜାଙ୍କର ଜୟ ଜୟକାର କଲେ । ରାଜା ନିଜର ହାତୀଟିକୁ ଅଟକାଇ ପ୍ରଶ୍ନ କଲେ, ଆପଣମାନେ କଣ ଚାହାନ୍ତି ?

ବ୍ରାହ୍ମଣମାନେ କହିଲେ, ଆମେ ଅଞ୍ଜନ ହାତୀକୁ ମାଗୁଛୁ । ଆମେ ସେହି ହାତୀକୁ ନେଇ କଳିଙ୍ଗ ରାଜାଙ୍କୁ ଦେବୁ । ତା' ବଦଳରେ ଆମେ ତାଙ୍କଠାରୁ ବହୁତ ଧନ ସମ୍ପଦ ପାଇ ସୁଖୀ ହେବୁ ଏବଂ ଆପଣଙ୍କୁ ଆଶୀର୍ବାଦ କରିବୁ ।

ରାଜା ଏହା ଶୁଣି ହାତୀ ଉପରେ ବସିଥିବା ଅବସ୍ଥାରେ ହିଁ ତାକୁ ଦାନ କରି ଦେଲେ । ହାତୀକୁ ବହୁ ମୂଲ୍ୟବାନ୍ ଅଳଙ୍କାରରେ ସଜା ଯାଇଥିଲା । ତଥାପି ରାଜା ହାତୀ ଉପରୁ ଓହ୍ଲାଇ କହିଲେ, ଯଦି ହାତୀର କୌଣସି ଅଙ୍ଗ ନିରାଭରଣ ଥାଏ, ତାହାହେଲେ ତାକୁ ମଧ୍ୟ ରତ୍ନବିମଣ୍ଡିତ କରିଦେବି ।

କିନ୍ତୁ ହାତୀକୁ ଆହୁରି ସଜ୍ଜିତ କରିବାର କୌଣସି ଆବଶ୍ୟକତା ନ ଥିଲା । କାରଣ ତାହା ସଂପୂର୍ଣ୍ଣରୂପେ ଅଳଂକୃତ ଥିଲା । ବ୍ରାହ୍ମଣମାନେ ରାଜାଙ୍କୁ ଆଶୀର୍ବାଦ ଦେଇ ହାତୀକୁ ସଙ୍ଗରେ ନେଇ କଳିଙ୍ଗ ଅଭିମୁଖରେ ଯାତ୍ରା କଲେ ।

କଳିଙ୍ଗରେ ପହୁଞ୍ଚି ସେମାନେ ହାତୀକୁ ନେଇ ରାଜାଙ୍କ ମାର୍ଫତରେ ଛାଡ଼ି ଦେଲେ । ରାଜା ସୁଖୀ ହୋଇ ବ୍ରାହ୍ମଣମାନଙ୍କୁ ଦକ୍ଷିଣା ଦେଲେ ।

ଏହାପରେ ମଧ୍ୟ କଳିଙ୍ଗରେ ବର୍ଷା ହେଲା ନାହିଁ । ଏହା ଦେଖି ରାଜା ପ୍ରଶ୍ନ କଲେ, ବର୍ତ୍ତମାନ କଣ କରାଯିବ ?

ସଭାସଦ୍‌ମାନେ କହିଲେ, ଏଥିରୁ ଜଣାପଡୁଛି, ଆମ ରାଜ୍ୟ ବିଷମ ପରିସ୍ଥିତି ଭିତରେ ଗତି କରୁଛି । ହାତୀର ଯେ ଅନେକ ଗୁଣ ଅଛି, ଏକଥା ସତ୍ୟ ଅଟେ । କିନ୍ତୁ ସେ ଏକାକୀ ରାଜ୍ୟର ସମସ୍ତ ଦୁର୍ଗୁଣ ଦୂର କରିବାରେ ଅସମର୍ଥ । ପୁଣି ଆମେ ଜାଣୁ, କୁରୁ ରାଜ୍ୟରେ ଯେତେ-ଦିନ ପର୍ଯ୍ୟନ୍ତ ଠିକ୍ ଭାବରେ ବର୍ଷା ହେଉଛି, ସେତେଦିନ ପର୍ଯ୍ୟନ୍ତ ରାଜ୍ୟରେ ଧର୍ମାଚରଣ ବିଧିସବୁ ଠିକ୍ ଠିକ୍ ଭାବରେ ପାଳିତ ହେଉଛି । ସେଥିପାଇଁ ଏ ହାତୀକୁ କୁରୁରାଜାଙ୍କୁ ଫେରାଇ ଦିଆଯିବା ଭଲ । ପୁଣି ତାଙ୍କୁ ପଚାରିବା ଉଚିତ ହେବ ଯେ, ସେ ଯେଉଁ ଧର୍ମ ପାଳନ କରୁଛନ୍ତି ତାହା ଏକ ସୁବର୍ଣ୍ଣ ଅଭିଲେଖରେ ଲେଖି ଦେବେ ।

ଆଠଜଣଯାକ ବ୍ରାହ୍ମଣ ପୁଣି ଥରେ ବାହାରି ଗଲେ ଓ କୁରୁ ରାଜାଙ୍କୁ ହାତୀକୁ ଫେରାଇ ଦେଇ କହିଲେ, ମହାରାଜ ! ଆମେ ଏ ହାତୀକୁ ଆମ ରାଜ୍ୟକୁ ନେଲେ ବର୍ଷା ହେବ ଜାଣି ନେଇଥିଲୁ । କିନ୍ତୁ ବର୍ଷା ହେଲା ନାହିଁ । ଆମେ ଜାଣିବାକୁ ପାଇଲୁ, ଆପଣ ଠିକ୍ ଠିକ୍ କୁରୁ ଧର୍ମ ପାଳନ କରୁଅଛନ୍ତି । ଆମ ରାଜା ମଧ୍ୟ ସେହି ଧର୍ମ ପାଳନ କରିବାକୁ ଚାହାନ୍ତି । ତେଣୁ ଆମର ଅନୁରୋଧ, ଆପଣ ସୁବର୍ଣ୍ଣ ଅଭି-ଲେଖରେ ସେହି ଧର୍ମ ଲେଖି ଦିଅନ୍ତୁ । ଆମ ରାଜା ସେ ଧର୍ମ ପାଳନ କଲେ ଆପଣଙ୍କ ଦେଶ ପରି ଆମ ରାଜ୍ୟ ସମୃଦ୍ଧ ହେବ ଓ ପ୍ରଜାକୁଳ ସୁଖୀ ହେବେ ।

ରାଜା ଏ ଅନୁରୋଧରେ ରାଜି ହେଲେ ଓ ସୁବର୍ଣ୍ଣ ଅଭିଲେଖରେ ଲେଖାଇ ଦେଲେ, ''ଜୀବ ହିଂସା କର ନାହିଁ । କାମ, କ୍ରୋଧ ଓ ମିଥ୍ୟାଚରଣ କର ନାହିଁ । ମିଥ୍ୟା କହ ନାହିଁ । ମଦ୍ୟପାନ କର ନାହିଁ ।''

ରାଜା ଏହା ଲେଖାଇ ଦେଲେ ସିନା, କିନ୍ତୁ ସନ୍ଦେହ ହେଲା ଯେ, ସେ ଲେଖା ସମ୍ପୂର୍ଣ୍ଣ ନୁହେଁ । ତେଣୁ ସେ ବ୍ରାହ୍ମଣମାନଙ୍କୁ ନିଜ ମାତାଙ୍କ ନିକଟକୁ ପଠାଇ ତାଙ୍କଠାରୁ କୁରୁଧର୍ମ ସମ୍ପର୍କରେ ଉପଦେଶ ଶୁଣିବାକୁ କହିଲେ ।

ରାଜମାତା ବ୍ରାହ୍ମଣମାନଙ୍କୁ କହିଲେ, ମୋ' ମତରେ ମୁଁ କୁରୁଧର୍ମ ପାଳନ କରି ଚାଲୁଅଛି । କିନ୍ତୁ ସଠିକ ଭାବରେ ଜାଣେ ନାହିଁ ଯେ, ଠିକ୍ ଠିକ୍ ଭାବରେ ମୁଁ ସେ ଧର୍ମମାନି ଚାଲୁଅଛି କି ନାହିଁ । ତେଣୁ ଆପଣ-ମାନେ ଉପରାଜା ଅର୍ଥାତ୍ ରାଜାଙ୍କର ସାନଭାଇ ନିକଟକୁ ଯାଆନ୍ତୁ । ସେ ଆପଣଙ୍କୁ କୁରୁଧର୍ମ କଣ ଠିକ୍ ଭାବରେ ଜଣାଇ ପାରିବେ ।

ରାଜାଙ୍କ ସାନଭାଇଙ୍କ ମନରେ ମଧ୍ୟ କୁରୁଧର୍ମ ପାଳନ ସମ୍ପର୍କରେ ସନ୍ଦେହ ଥିଲା । ତେଣୁ ସେ ବ୍ରାହ୍ମଣମାନଙ୍କୁ ରାଜକର୍ମଚାରୀ ଭୂମ୍ୟଧିକାରୀଙ୍କ ନିକଟକୁ ପଠାଇଲେ । ତାଙ୍କର ଧାରଣା ହେଲା, ରାଜକର୍ମଚାରୀ ହୁଏତ କୁରୁଧର୍ମ ସମ୍ପର୍କରେ ଠିକ୍ କଥା ଜାଣିଥିବେ । ସେହି ରାଜକର୍ମ-ଚାରୀଙ୍କ କାମ ହେଲା, ଜମି ମାପ କରିବା । ବାଡ଼ିରେ ଦଉଡ଼ି ବାନ୍ଧି ସେ ଜମି ମାପିବା କାମ କରୁଥିଲେ । ସେହି ସମୟରେ ସେ ଜମି ମାପ କରୁ କରୁ ଏକ ବିଷମ ସମସ୍ୟାର ସମ୍ମୁଖୀନ ହୋଇଥିଲେ । ଯଦି ବାଡ଼ିଟିକୁ ସେ ନିର୍ଦ୍ଦିଷ୍ଟ କଙ୍କଡ଼ା ଗାତରେ ପୂରାଇବେ ତ କଙ୍କଡ଼ାଟି ମରିଯିବ । ଯଦି ନିର୍ଦ୍ଦିଷ୍ଟ ସ୍ଥାନର ଟିକକ ଆଗକୁ ବାଡ଼ି ପୋତା ହେଲା, ତାହାହେଲେ ତାରି ଫଳରେ ରାଜାଙ୍କ ପ୍ରତି ଅନ୍ୟାୟ ହେବ । ଆଉ ଯଦି ବାଡ଼ିଖଣ୍ଡକ ପଛକୁ ପୋତାଯିବ ତାହାହେଲେ ଗୃହସ୍ଥ ପ୍ରତି ଅନ୍ୟାୟ ହେବ । ଶେଷରେ ସେ ଠିକ୍ କଲେ, ବାଡ଼ିଖଣ୍ଡକ କଙ୍କଡ଼ା ଗାତରେ ହିଁ ପୋତିବେ । ବାଡ଼ି ଦେଖି କଙ୍କଡ଼ା ହୁଏତ ଗାତ ଛାଡ଼ି ପଳାଇବ । କିନ୍ତୁ ବାଡ଼ିଖଣ୍ଡିକ ଗାତରେ ପୂରାଇବା ମାତ୍ରେ, କଙ୍କଡ଼ା ମୁହଁରୁ ଏକ ଶବ୍ଦ ଜାତ ହେଲା । ରାଜକର୍ମଚାରୀ ସେ ଶବ୍ଦ ଶୁଣି ଭୟ ପାଇଗଲେ । ସେ ଭାବିଲେ, ହୁଏତ କଙ୍କଡ଼ା ମରି ଯାଇଛି ଓ ତାଙ୍କର ଧର୍ମନାଶ ହୋଇଛି ।

ଠିକ୍ ଏତିକିବେଳେ ବ୍ରାହ୍ମଣମାନେ ସନ୍ଦେହ ମୋଚନ ସକାଶେ ଭୂମ୍ୟଧିକାରୀ ରାଜକର୍ମଚାରୀଙ୍କ ନିକଟରେ ପହଞ୍ଚିଲେ । ରାଜକର୍ମଚାରୀ ସବୁ ଶୁଣି କହିଲେ, ମୁଁ ବା ଏଥିରେ କି ଉପଦେଶ ଦେବି ? ମୋର ମନେହୁଏ, ମୁଁ ନିଜେ ଧର୍ମ ସଙ୍କଟରେ ପଡ଼ିଛି । ଏହା କହି ସେ ବ୍ରାହ୍ମଣମାନଙ୍କୁ ନିଜ ପରିସ୍ଥିତି କଥା କହିଲେ ।

ସବୁକଥା ଶୁଣିବା ପରେ ବ୍ରାହ୍ମଣମାନେ କହିଲେ, ଯଦି ଆପଣ ଅଜ୍ଞାତରେ ସେହି କଙ୍କଡ଼ାକୁ ମାରି ଦେଇଥାନ୍ତି, ତାହାହେଲେ ଆପଣଙ୍କୁ ପାପ ଲାଗିବା କଥା ନୁହେଁ ।

କିନ୍ତୁ ଭୂମ୍ୟଧିକାରୀ କୌଣସି ଉପଦେଶ ନ ଦେଇ, ବ୍ରାହ୍ମଣ-ମାନଙ୍କୁ ସାରଥିଙ୍କ ନିକଟକୁ ପଠାଇଲେ ।

ସାରଥି ମଧ୍ୟ ଚିନ୍ତା ସଙ୍କଟରେ ପଡ଼ିଥିଲେ । କାରଣ ସେ ଦିନେ ରାଜାଙ୍କୁ ରଥରେ ବସାଇ ବଗିଚାକୁ ନେଇ ଯାଇଥିଲେ । ରଥ ଫେରାଇଲାବେଳେ ସେ ଅନୁମାନ କଲେ, ବର୍ଷା ହେବ । ତେଣୁ ସେ ଘୋଡ଼ାମାନଙ୍କୁ ଚାବୁକ ଦେଖାଇଲେ । ଘୋଡ଼ାମାନେ ଚାବୁକ ଦେଖି

ଖୁବ୍ ଜୋରରେ ଦୌଡ଼ିଲେ । ତାପରେ ଦେଖାଗଲା, ଘୋଡ଼ାମାନେ ସେଇଠି, ଅର୍ଥାତ ସାରଥି ସେମାନଙ୍କୁ ଯେଉଁ ସ୍ଥାନରେ ଚାବୁକ ଦେଖାଇ ଥିଲେ, ସେହି ସ୍ଥାନରେ ପହଞ୍ଚିବା ମାତ୍ରେ ତୀର ବେଗରେ ଦୌଡ଼ିବାକୁ ଲାଗିଲେ । ଘୋଡ଼ାମାନେ ହୁଏତ ଭାବିଲେ, ସେହି ନିର୍ଦ୍ଦିଷ୍ଟ ସ୍ଥାନରେ କିଛି ବିପଦ ଅଛି । ସେଇଥିପାଇଁ ସାରଥି ସେମାନଙ୍କୁ ଚାବୁକ ଦେଖାଇଥିଲା । ସେଥିଯୋଗୁ ସେମାନେ ଗଲା ଆସିଲା ବେଳେ, ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ମାତ୍ରେ ଖୁବ୍ ଜୋର୍‌ରେ ଦୌଡ଼ୁଥିଲେ । ଏହି କଥା ବ୍ରାହ୍ମଣମାନଙ୍କୁ ଶୁଣାଇବା ପରେ ସାରଥି କହିଲେ, ହୁଏତ ମୁଁ ନିଜେ ଧର୍ମଭଙ୍ଗ କରିଛି । ତେଣୁ ମୁଁ ଉପଦେଶ ଦେବାପାଇଁ ଅଯୋଗ୍ୟ ।

ବ୍ରାହ୍ମଣମାନେ ତାଙ୍କୁ ବୁଝାଇ କହିଲେ ଯେ, ଘଟଣାଟା ନିହାତି ଛୋଟ ଧରଣର । ଆପଣ ଯାହା କରିଛନ୍ତି, ଠିକ୍ କରିଛନ୍ତି । କିନ୍ତୁ ଘୋଡ଼ାମାନେ ପଶୁ ହୋଇଥିବାରୁ, ଅସଲ କାରଣ ବୁଝି ନ ପାରି, ସେହି ପରିସ୍ଥିତିରେ ଦୌଡ଼ିବା ଉଚିତ ବୋଲି ଧରିନେଲେ । ଏଥିରେ ଆପଣଙ୍କର ଦୋଷ କଣ ?

ତଥାପି ସାରଥି ବୁଝିଲେ ନାହିଁ । ସେ ବ୍ରାହ୍ମଣମାନଙ୍କୁ ଜଣେ ସାଧବଙ୍କ ନିକଟକୁ ପଠାଇଲେ ଏବଂ କହିଲେ, ସାଧବ ହିଁ ଆପଣଙ୍କୁ ଉପଯୁକ୍ତ ଉପଦେଶ ଦେଇ ପାରିବେ ।

ଆଠଜଣଯାକ ବ୍ରାହ୍ମଣ ସାଧବଙ୍କ ପାଖରେ ପହଞ୍ଚି ସବୁକଥା କହିଲେ । ସବୁକଥା ଶୁଣି ସାରିବା ପରେ ସାଧବ କହିଲେ, ସେହିପରି ଧର୍ମପାଳନ ମୁଁ ବି କରୁଛି । କିନ୍ତୁ ବର୍ତ୍ତମାନ ମୋର ବି ଗୋଟିଏ ଭୁଲ ହୋଇ ଯାଇଛି । ସେ ଭୁଲଟି ହେଲା, ନିଜେ ମୁଁ ମୋ ବିଲକୁ ଯାଇ ଦେଖିଲି, ଧାନକେଣ୍ଡାସବୁ ଡଢୁରି ଖୁବ୍ ସୁନ୍ଦର ଦେଖାଯାଉଛି । ଭାବିଲି, ମୁଠାଏ ଧାନକେଣ୍ଡା ବାଛି ଦେବି । ଏହା ସ୍ଥିର କରି, ମୁଁ ମୁଠାଏ ଧାନକେଣ୍ଡା ବାଛି ଅଲଗା ରଖିଲି । ଏବେ ଭାବୁଛି, ସେହି ମୁଠାକ ଧାନକେଣ୍ଡାରେ ବି ରାଜାଙ୍କର ଅଂଶ ଥିଲା । ସେହି ଅଂଶ ମୁଁ ରାଜାଙ୍କୁ ଦେଇ ନାହିଁ । ଏହି କାରଣରୁ ଭାବୁଛି; ମୁଁ ଧର୍ମଭଙ୍ଗ କରିଛି । ତେଣୁ ମୁଁ ନିଜକୁ ନିଜେ ସନ୍ଦେହ କରୁଛି ।

ଏହା ଶୁଣି ବ୍ରାହ୍ମଣମାନେ କହିଲେ, ଆପଣଙ୍କ ମନ ଠିକ୍ ଅଛି । ଏଥିପାଇଁ ଆପଣଙ୍କ ଉପରେ 'ଚୋରୀ' ଦୋଷ ଆରୋପ କରଯାଇ ପାରିବ ନାହିଁ ।

ତଥାପି ସାଧବ ସେହି ବ୍ରାହ୍ମଣମାନଙ୍କୁ ମହାମାତ୍ୟଙ୍କ ନିକଟକୁ ପଠାଇ ଦେଲେ ।

ବ୍ରାହ୍ମଣମାନେ ମହାମାତ୍ୟଙ୍କ ନିକଟରେ ପହଞ୍ଚି ନିଜ କଥା କହିଲେ । କିନ୍ତୁ ମହାମାତ୍ୟଙ୍କର ମଧ୍ୟ ନିଜ ଉପରେ କିଛିଟା ସନ୍ଦେହ ଥିଲା । ସେ କହିଲେ, ଦିନେ ସେ ଅମାର ଘରେ ବସି ରାଜାଙ୍କ ପ୍ରାପ୍ୟ ଧାନ ମାପୁଥିଲେ । ଚିହ୍ନ ଗଣତି ପାଇଁ ସେ ଅମପା ଧାନରୁ ଅନେକ ଧାନ ନେଇ ଚିହ୍ନଟ ରଖିଥିଲେ । ଏପରି ସମୟରେ ବର୍ଷା ଆସିଗଲା ।

ତେଣୁ ସେ ଚିହ୍ନଟ ଧାନ ମୁଠିସବୁ ଗଣିନେଇ, ତରବରରେ ରାଜାଙ୍କ ଭାଗ ଧାନରେ ମିଶାଇ ଦେଲେ ।

ବର୍ଷା ହେତୁ ତରବରରେ ଏସବୁ ହୋଇଗଲା । କିନ୍ତୁ ପରେ ଗଭୀରଭାବେ ଚିନ୍ତାକରି ସେ ବୁଝିଲେ, ବିନା କାରଣରେ ରାଜାଙ୍କ ଭାଗଧାନ ମାତ୍ରା ବଢ଼ି ଗଲା ଓ କୃଷକର ଭାଗ କମିଗଲା ।

ଏସବୁ କହି ସାରି ମହାମାତ୍ୟ କହିଲେ, ଏହି କାରଣରୁ ମୋର ମୋ' ନିଜ ଉପରୁ ବିଶ୍ୱାସ ତୁଟି ଯାଇଛି । ମୋର ଭୟ ହେଉଛି ଯେ, ମୁଁ ନିଜେ ମଧ୍ୟ ଧର୍ମଭଙ୍ଗ କରିଛି ।

ଏହା ଶୁଣି ବ୍ରାହ୍ମଣମାନେ ମହାମାତ୍ୟଙ୍କୁ ବୁଝାଇ କହିଲେ ଯେ, ଉକ୍ତ କାର୍ଯ୍ୟରେ ତାଙ୍କର କୌଣସି ଭୁଲ ନାହିଁ । ତଥାପି ମହାମାତ୍ୟ ସେହି ବ୍ରାହ୍ମଣମାନଙ୍କୁ ଦ୍ୱାରପାଳ ପାଖକୁ ପଠାଇ ଦେଲେ ।

ଦ୍ୱାରପାଳ ବ୍ରାହ୍ମଣମାନଙ୍କ ନିକଟରୁ ସବୁକଥା ଶୁଣିସାରିବା ପରେ କହିଲେ ମୁଁ ମଧ୍ୟ ଧର୍ମ ଉପଦେଶ ଦେବା ପରି ଯୋଗ୍ୟ ବ୍ୟକ୍ତି ନୁହେଁ । କଥା ହେଲା, ଦିନେ ମୁଁ ନଗରର ଦ୍ୱାର ବନ୍ଦ କରିବା ପୂର୍ବରୁ ଲୋକଙ୍କୁ ତିନିଥର ସତର୍କ କରାଇ ଦେଇ କହିଲି, ବର୍ତ୍ତମାନ କବାଟ ବନ୍ଦ ହେବ । ତା' ପରେ ମୁଁ କବାଟ ବନ୍ଦ କରିଦେଲି । ଠିକ୍ ଏତିକି-ବେଳେ ଜଣେ ଗରିବ ଲୋକ ଗୋଟିଏ ସ୍ତ୍ରୀ ଲୋକ ସଙ୍ଗରେ ଜଙ୍ଗଲରୁ କାଠପତ୍ର ନେଇ ଫେରୁଥିଲା । ତାକୁ ଦେଖି ମୋ' ମନରେ ଭୀଷଣ କ୍ରୋଧ ଜାତ ହେଲା । ମୁଁ କହିଲି, ତୁମେ ସବୁ ନିଜକୁ ଖୁବ୍ ବଡ଼ ବୋଲି ଭାବୁଛ ନା କଣ ? ସଙ୍ଗରେ ସ୍ତ୍ରୀକୁ ନେଇ ଏଣେ ତେଣେ ରସିକତା କରି ବୁଲୁଛ । କଣ ଖିଆଲ ନାହିଁ, ଏଠାରେ ଜଣେ ରାଜା ଅଛନ୍ତି ବୋଲି । ଏହା ଶୁଣି ସେହି ଗରିବ ଲୋକଟା କହିଲା, ଯାହାକୁ ମୁଁ ତାର ସ୍ତ୍ରୀ ବୋଲି କହୁଛି, ସେ ସତରେ ସ୍ତ୍ରୀ ନୁହେ, ଛୋଟ ଭଉଣୀ । ଏହା ଶୁଣି ମୁଁ ମନେକଲି, ମୋର ନିଶ୍ଚୟ ଧର୍ମଭଙ୍ଗ ହୋଇଛି । ମୁଁ ଭଉଣୀକୁ ସ୍ତ୍ରୀ ବୋଲି ଭାବି ନେଇଥିଲି ।

ଏହା ଶୁଣି ବ୍ରାହ୍ମଣମାନେ କହିଲେ, ଆପଣ ଅଧର୍ମ କରିଛନ୍ତି ବୋଲି କାହିଁକି ଭାବୁଛନ୍ତି ? ଆପଣ ତ ଜାଣିଶୁଣି ଏ ପ୍ରକାର ବିରୋଧ ଶବ୍ଦ କହି ନାହାନ୍ତି । ତା ଛଡ଼ା ଲୋକେ ତ ସାଧୁ ଏଇ ପ୍ରକାର ଅନାଗ୍ରହ ଆଚରଣ କରୁଛନ୍ତି । ସେଥିପାଇଁ ସିନା ଆପଣ ଏପରି କଥା କହିଲେ ।

ଏହାପରେ ଆଠଜଣଯାକ ବ୍ରାହ୍ମଣ ସୁନାପଟା ଉପରେ ପଞ୍ଚଶୀଳ ଲେଖି କଳିଙ୍ଗ ଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ସବୁଲୋକ ଉପଦେଶ ଦେବାକୁ ମନାକରି ମଧ୍ୟ ଏହି ପଞ୍ଚଶୀଳ ବାର୍ତ୍ତାକୁ ଲେଖି ଦେଇଥିଲେ ।

ବ୍ରାହ୍ମଣମାନେ କଳିଙ୍ଗ ରାଜ୍ୟରେ ପ୍ରବେଶ କରିବା ମାତ୍ରେ ବର୍ଷା ହେଲା ଏବଂ ଲୋକମାନେ ସୁଖରେ କାଳଯାପନ କରିବାକୁ ଲାଗିଲେ ।






ବୋଧିସତ୍ତ୍ୱ ଥରେ ଗୋଟିଏ ମୃଗ ଦଳର ଅଧିପତି ହୋଇଥିଲେ । ଗୋଟିଏ ଅତ୍ୟନ୍ତ ରମଣୀୟ ଅଧିତ୍ୟକାରେ ଏହି ମୃଗଦଳ ତାଙ୍କ ନେତୃତ୍ୱରେ ନିର୍ଭୟରେ ବସବାସ କରୁଥିଲେ । ସେମାନେ ପ୍ରାୟ ଶତାଧିକ ସଂଖ୍ୟକ ଥିଲେ । ପରମ ଆନନ୍ଦରେ ସେମାନଙ୍କ କାଳଯାପନ ହେଉଥିଲା ।

ଦଳର ଅଧିପତି ଦେଖିବାକୁ ଅତ୍ୟନ୍ତ ହୃଷ୍ଟପୁଷ୍ଟ ଓ ସୁନ୍ଦର ଥିଲେ । ସେ ସର୍ବଦା ନିଜ ଦଳର ବିଶେଷ ଯତ୍ନ ନେଉଥିଲେ ।

ଦିନେ ଗୋଟିଏ ବ୍ୟାଧ ବଣରେ ଶିକାର କରି ବୁଲୁ ବୁଲୁ ଏମାନଙ୍କ ସନ୍ଧାନ ପାଇଲା । ସେ ଆନନ୍ଦରେ ଯାଇ ଦେଶର ରାଜାଙ୍କୁ ସମସ୍ତ ବିଷୟ ଜଣାଇଲା । । ରାଜା ଉତ୍ସାହିତ ହୋଇ ସୁଖକର ମୃଗୟା ନିମିତ୍ତ ତାଙ୍କ ଅଧୀନରେ ଥିବା ସମସ୍ତ ସୈନ୍ୟଙ୍କୁ ସଙ୍ଗରେ ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହୁଞ୍ଚିଲେ । ସୈନ୍ୟମାନେ ମୃଗଦଳର ଚତୁର୍ଦ୍ଦିଗରେ ଘେରିଗଲେ ।

ଏମାନଙ୍କୁ ଦେଖି ଦଳପତି ଅତ୍ୟନ୍ତ ବିବ୍ରତ ହୋଇ ପଡ଼ିଲେ । କେବଳ ନିଜର ପ୍ରାଣରକ୍ଷା କରିବା ସହଜ । ଯେ କୌଣସି ମତେ ଶିକାରୀମାନଙ୍କ କବଳରୁ ରକ୍ଷା ପାଇହେବ । କିନ୍ତୁ ନିଜ ଅଧୀନରେ ଥିବା ମୃଗମାନଙ୍କର ଦଶା କଣ ହେବ ? ଦଳପତି ନିଜ ଅଧୀନରେ ଥିବା ମୃଗ ମୃଗୀମାନଙ୍କର ପ୍ରାଣରକ୍ଷା କରିବାକୁ ଚିନ୍ତିତ ହେଲେ ।

କିଛିକ୍ଷଣ ପରେ ମୃଗାଧିପତି ସ୍ଥିର କଲେ, ଅଧିତ୍ୟକା ପାଖରେ ଥିବା ଗୋଟିଏ ବେଗଗାମୀ ସ୍ରୋତସ୍ୱତୀକୁ ଅତିକ୍ରମ କରିବା ବ୍ୟତୀତ ପଳାୟନର ଅନ୍ୟ ପନ୍ଥା କିଛି ନାହିଁ । କିନ୍ତୁ ମୃଗୀ ଓ ଶିଶୁ ମୃଗମାନଙ୍କ ପକ୍ଷରେ ସେହି ଖରସ୍ରୋତା ନଦୀକୁ ପାରିହେବା ସହଜ ନୁହେଁ । ତେଣୁ ଦଳପତି ନିଜର ଭଲ ମନ୍ଦ କଥା ଭୁଲି ଯାଇ, ଦଳର ସମସ୍ତଙ୍କୁ ତାଙ୍କ

ସଙ୍ଗରେ ସେହି ଖରସ୍ରୋତା ସ୍ରୋତସ୍ୱତୀ ନିକଟକୁ ଆସିବାକୁ କହିଲେ। ତାଙ୍କ କଥା ମାନି ଦଳର ସମସ୍ତେ ତାଙ୍କର ଅନୁଧାବନ କଲେ ।

ସ୍ରୋତସ୍ୱତୀ ପାଖରେ ପହୁଞ୍ଚିବା ମାତ୍ରେ ମୃଗାଧିପତି ଗୋଷ୍ଠୀର ମଙ୍ଗଳ ସାଧନ ସକାଶେ ତରଙ୍ଗିଣୀର ଖରସ୍ରୋତ ମଧ୍ୟକୁ ଲମ୍ଫ ପ୍ରଦାନ କଲେ ଓ ଦଳର ମୃଗ, ମୃଗୀମାନଙ୍କୁ ପ୍ରଥମେ ତାଙ୍କର ପିଠି ଉପରକୁ ଡେଇଁ ତାପରେ ଅନ୍ୟ ତୀରକୁ ଡେଇଁଯିବା ପାଇଁ ଇଙ୍ଗିତ ଦେଲେ ।

ଦଳାଧିପତିଙ୍କର ନିର୍ଦ୍ଦେଶ ପାଇବା ମାତ୍ରେ ଗୋଟିଏ ପରେ ଗୋଟିଏ ମୃଗ ପ୍ରଥମେ ଦଳପତିଙ୍କ ପୃଷ୍ଠ ଉପରକୁ ଓ ସେଠାରୁ ଅନ୍ୟ ତୀରକୁ ଡେଇଁ, ସେହି ବିପଜ୍ଜନକ ତରଙ୍ଗିଣୀକୁ ପାରିହେବା ସଙ୍ଗେ ସଙ୍ଗେ ନିଜର ଜୀବନ ରକ୍ଷା କରିବାରେ ସମର୍ଥ ହେଲେ ।

କିନ୍ତୁ ଶତ ଶତ ହରିଣ ହରିଣୀଙ୍କର ବେଗ ପତିତ ଖୁରଘ ତରେ ଦଳପତିଙ୍କ ପୃଷ୍ଠ ମାଂସ ଛିନ୍ନ ଭିନ୍ନ ହୋଇ ଧାର ଧାର ହୋଇ ରକ୍ତ ଗଡ଼ିଲା ଓ ଅବଶେଷରେ ପୃଷ୍ଠଦେଶର ଅସ୍ଥି ଦେଖାଗଲା । ସେ ମୃତ୍ୟୁ ନିକଟ ହେବା ଜାଣି ନିଜ ଦଳର ମୃଗ ଓ ମୃଗୁଣୀମାନଙ୍କୁ ଥରେ ଦୃଷ୍ଟିପାତ କରିବାକୁ ଚାହିଁଲେ । ସେ ଦେଖି ଖୁସି ହେଲେ ଯେ, ଦଳର ପ୍ରାୟ ସମସ୍ତ ମୃଗ ଓ ମୃଗୁଣୀ ନିରାପଦ ସ୍ଥାନକୁ ଚାଲିଯାଇ ଅଛନ୍ତି । କିନ୍ତୁ ଅବଶିଷ୍ଟ ଏକମାତ୍ର ମୃଗଶିଶୁ ବିପଦସଙ୍କୁଳ ତୀର ଅତିକ୍ରମ କରି ପାରି ନାହିଁ । ଦଳପତି ମରଣଯନ୍ତ୍ରଣା ଭୁଲିଯାଇ ସେଇଠି ପୂର୍ବପରି ଦଣ୍ଡାୟମାନ ହେଲେ ଓ ମୃଗ ଶିଶୁକୁ ତାଙ୍କ ପୃଷ୍ଠ ଉପର ଦେଇ ନିରାପଦ ତୀରକୁ ଚାଲିଯିବାକୁ କହିଲେ । ମୃଗ ଶିଶୁଟି ତାଙ୍କରି ନିର୍ଦ୍ଦେଶ ଅନୁଯାୟୀ କାର୍ଯ୍ୟ କଲା ଓ ଆତ୍ମରକ୍ଷା କରିବାରେ ସଫଳ ହେଲା ।

କିନ୍ତୁ ମୃଗାଧିପତି ଅକଥିତ ବେଦନାରେ ସେହି ତରଙ୍ଗିଣୀ ଜଳରେ ଜାଗତିକ ଲୀଳା ସାଙ୍ଗ କଲେ ।






. . . ଅନେକ ଯୁଗ ତଳର କଥା । ଥରେ ବୋଧିସତ୍ତ୍ୱ କୁକୁର ଗର୍ଭରୁ ଜାତ ହେଲେ । ସେ ଅନ୍ୟ କୁକୁରମାନଙ୍କ ସଙ୍ଗରେ ଶ୍ମଶାନ ଭୂଇଁରେ ବସବାସ କଲେ ।

ଦିନେ ରାଜ-ମହଲରେ ଗୋଟିଏ ଘଟଣା ଘଟିଲା । ରାଜା ସେଦିନ ସକାଳୁ ରଥ ଉପରେ ଚଢ଼ି ଶିକାର କରିବାକୁ ବାହାରି ଗଲେ ଏବଂ ସୂର୍ଯ୍ୟାସ୍ତ ପରେ ଯାଇ ନଅରକୁ ଫେରିଲେ । ଶିକାର କରି ସମସ୍ତେ ଏତେ କ୍ଳାନ୍ତ ହୋଇ ଯାଇଥିଲେ ଯେ, ରଥକୁ ସେହି ଅବସ୍ଥାରେ ହିଁ ଅଗଣାରେ ଛାଡ଼ି ଆସିଲେ । ରଥ ଯେମିତି ଭାବରେ ବନ୍ଧାବନ୍ଧି ହୋଇ ଶିକାର ଉଦ୍ଦେଶ୍ୟରେ ନିଆ ଯାଇଥିଲା, ଠିକ୍ ସେମିତି ବନ୍ଧାବନ୍ଧି ହୋଇ ପଡ଼ି ରହିଲା । ସେହିଦିନ ରାତିରେ ବର୍ଷା ହେଲା ଓ ସମଗ୍ର ରଥଟା ବର୍ଷାରେ ଓଦା ହୋଇଗଲା । ବର୍ଷା ପାଣିରେ ରଥରେ ବନ୍ଧା ହୋଇଥିବା ଅଂଶତକ ସାମାନ୍ୟ ହୁଗୁଳି ଗଲା । ରାଜମହଲର କୁକୁରମାନେ ରଥର ସେହି ଚମଡ଼ା ଅଂଶ ଓ ଚମଡ଼ା ଦଉଡ଼ିତକ କାମୁଡ଼ିବାରେ ଲାଗିଲେ ।

ଏ ଖବର ରାଜାଙ୍କ କାନକୁ ଗଲା । ରାଜା ଅଗ୍ନିବାଣ ହୋଇ ହୁକୁମ ଦେଲେ, ଯେଉଁଠି କୁକୁର ଦେଖୁଛ, ଦେଖିବା ମାତ୍ରେ ମାରି ଖତମ କର ।

କୁକୁରମାନଙ୍କ ଉପରେ ଘୋର ବିପତ୍ତି ପଡ଼ିଲା । ବହୁତ କୁକୁର ମରି ଶୋଇଲେ । ଅବଶିଷ୍ଟ କୁକୁରମାନେ ବିଚାର କରି ସ୍ଥିର କଲେ ଯେ, ବୋଧିସତ୍ତ୍ୱ ପାଖରେ ତାଙ୍କର ଦୁଃଖ ଦୁର୍ଦ୍ଦଶା କଥା ଜଣାଇବେ ।

ଅନେକ କୁକୁର ମେଳିବାନ୍ଧି ଏକାଠି ଆସୁଥିବାର ଦେଖି ବୋଧିସତ୍ତ୍ୱ ପ୍ରଶ୍ନ କଲେ, ତୁମେ ସମସ୍ତେ ଆଜି ଏତେ ବ୍ୟସ୍ତ ହୋଇ ମୋ ପାଖକୁ ଆସିଲ କାହିଁକି ?

ସେମାନେ କହିଲେ, ଅଦ୍ଭୁତ ଘଟଣା ଘଟିଲା । ରାଜମହଲର କୁକୁରମାନେ ରାଜାଙ୍କ ରଥରେ ଲାଗିଥିବା ଚମଡା ଓ ଚମଦଉଡିସବୁ ଚୋବାଇ ଖାଇଗଲେ । କିନ୍ତୁ ରାଜକର୍ମଚାରୀମାନେ ରାଜାଙ୍କୁ ଖବର ଦେଲେ ଯେ, ବାହାର କୁକୁରମାନେ ଆସି ରଥର ଚମଡା ଓ ଚମ ଦଉଡି ସବୁ ଖାଇ ଯାଇଛନ୍ତି । ରାଜା ଏହାଶୁଣି ବିରକ୍ତ ହୋଇ ସମସ୍ତ କୁକୁରଙ୍କୁ ମାରି ପକା'ଇବାକୁ ଆଦେଶ ଦେଇଛନ୍ତି ।

ଏହାଶୁଣି ବୋଧିସତ୍ତ୍ୱ ମନେ ମନେ ଭାବିଲେ, ଅଜବ କଥା ହେଲା । ଚୋର ଯିଏ ସିଏ ବଂଚିଗଲା, ଅଥଚ ନିର୍ଦ୍ଦୋଷକୁ ମୃତ୍ୟୁଦଣ୍ଡ ହେଲା ।ଏହା ଭଲ କଥା ନୁହେଁ । ତା ହେଲେ ରାଜାଙ୍କୁ ଏ ସମସ୍ତ କଥା ଜଣାଇଦେବା ଉଚିତ ହେବ ନାହିଁକି ? ମୁଁ ନିଜେ ରାଜାଙ୍କୁ ଯାଇ କହିବି, ପ୍ରକୃତ ଘଟଣା କଣ ଓ ପ୍ରକୃତରେ ଦୋଷୀ କିଏ ? ଏଭଳି କଲେ ନିଜ ଜାତି ଭାଇଙ୍କୁ ନିଶ୍ଚିତ ମୃତ୍ୟୁମୁଖରୁ ଉଦ୍ଧାର କରିହେବ । ଏହା ସ୍ଥିର କରି ବୋଧିସତ୍ତ୍ୱ ସେହି କୁକୁରମାନଙ୍କୁ କହିଲେ, ତୁମ୍ଭେମାନେ ଏଇଠି ରୁହ , ମୁଁ ରାଜାଙ୍କୁ ଯାଇ ଦେଖା କରୁଛି ।

ଯଦିଓ ସେ କୁକୁର ଜନ୍ମ ପାଇଥିଲେ, ତଥାପି ସେ ଥିଲେ ବୋଧିସତ୍ତ୍ୱ । ସେହି କାରଣରୁ ରାସ୍ତାରେ ତାଙ୍କୁ ଲୋକମାନେ ଦେଖି ମଧ୍ୟ କିଛି କରି ପାରିଲେ ନାହିଁ । ଅତି ଆଶ୍ଚର୍ଯ୍ୟର କଥା, ସେ ସମସ୍ତ ବାଧାବଂଧନ ଅତିକ୍ରମ କରି ରାଜଦରବାରରେ ପହଞ୍ଚିଗଲେ ଏବଂ କୌଶଳକ୍ରମେ ରାଜ ସିଂହାସନ ତଳେ ହାଜର ହେଲେ ।

ଏହା ଦେଖି ଉପସ୍ଥିତ ସମସ୍ତ ଲୋକ 'ଧର ଧର' 'ମାର ମାର' କହି ଚିତ୍କାର କରିବାକୁ ଲାଗିଲେ । ରାଜା କିନ୍ତୁ ସମସ୍ତଙ୍କୁ ନୀରବ ହେବାକୁ ନିର୍ଦ୍ଦେଶ ଦେଇଲେ ଏବଂ କହିଲେ, ପ୍ରଥମେ କଥା କଣ ବୁଝ । ତା' ପରେ ମାରିବା କଥା ହେଲେ ମାରିବ ।

ରାଜାଙ୍କ କଥା ଶୁଣି ବୋଧିସତ୍ତ୍ୱ ସିଂହାସନ ତଳୁ ବାହାରି ଆସି, ରାଜାଙ୍କୁ ଦଣ୍ଡବତ ଜଣାଇ କହିଲେ, ମହାରାଜ, ଆପଣ କୁକୁରମାନଙ୍କୁ ମାରିବାକୁ ଆଦେଶ ଦେଇଛନ୍ତି । କିନ୍ତୁ କାରଣ କଣ କହିବେ କି ?

ରାଜା କହିଲେ, କୁକୁରମାନେ ଖୁବ୍ ଖରାପ କାମ କଲେ । ସେମାନେ ଜାଣିଥିଲେ ଯେ ରଥରେ ଲଗା ଯାଇଥିବା ଚମଡା ଓ ଚମ-ଦଉଡି ଖାଇବା ଜିନିଷ ନୁହେଁ । ତଥାପି ସେମାନେ ତାକୁ ଖାଇଗଲେ । ତଦ୍ୱାରା ମୋର କେତେ କ୍ଷତି ହେଲା !

ଏହାଶୁଣି ବୋଧିସତ୍ତ୍ୱ ପ୍ରଶ୍ନ କଲେ, କଣ ଆପଣ ନିଶ୍ଚିତ ଭାବରେ ଜାଣିଛନ୍ତି ଯେ କେଉଁ କୁକୁରମାନେ ଏହି ଅପରାଧ କରିଛନ୍ତି ?

ରାଜା କହିଲେ, ନା ମୁଁ ନିଜେ ଏକଥା ଜାଣି ନାହିଁ । ତେଣୁ ଆଦେଶ ଦେଲି, ସବୁ କୁକୁରଙ୍କୁ ମାରି ଖତମ କରିଦିଅ । ଯେ କୌଣସି ସ୍ଥାନରେ ଯେ କୌଣସି କୁକୁର ଦେଖିଲେ ମାର ।

ବୋଧିସତ୍ତ୍ୱ ପୁଣି ପ୍ରଶ୍ନ କଲେ, କଣ ଆପଣ ସଂସାରର ସବୁ କୁକୁରଙ୍କୁ ମାରିବାକୁ ଆଦେଶ ଦେଇଛନ୍ତି ନା କିଛିଟା କୁକୁରଙ୍କ ଉପରେ ଏ ଆଦେଶ ଲାଗୁ କରିବ ନାହିଁ !

ରାଜା କହିଲେ, ଆମ ନଅର ଭିତରେ ଥିବା କୁକୁରଙ୍କ ଉପରେ ଏ ଆଦେଶ ଲାଗୁ କରିବ ନାହିଁ ।

ଏହାଶୁଣି ବୋଧିସତ୍ତ୍ୱ କହିଲେ, ଆପଣ ଯେଉଁ ଆଦେଶ ଦେଇଛନ୍ତି ତାହା ରାଜୋପଯୁକ୍ତ ଆଦେଶ ନୁହେଁ । ଏହା ରାଜଧର୍ମ ମଧ୍ୟ ନୁହେଁ । ଆପଣ ପ୍ରଥମେ ଅସଲ ଅପରାଧୀର ସନ୍ଧାନ ନେଇ, କୁକୁରମାନଙ୍କୁ ମାରିବାକୁ ଆଦେଶ ଦେବା ଉଚିତ ଥିଲା । କାରଣ ଆପଣଙ୍କ ଅଜ୍ଞାତରେ ନିର୍ଦ୍ଦୋଷ ମୃତ୍ୟୁ ମୁଖରେ ପଡୁଛି ଓ ଦୋଷୀ ବଂଚି ଯାଉଛି । ଏହା କଣ ଆପଣଙ୍କ ନ୍ୟାୟ ବିଚାରରେ ଆଞ୍ଚ ଆଣୁ ନାହିଁ ?

ରାଜା ପ୍ରଶ୍ନ କଲେ, ଏ ଅପରାଧ କିଏ କରିଛି, ତାହା କଣ ତୁମେ ଜାଣ ?

ବୋଧିସତ୍ତ୍ୱ ଗମ୍ଭୀର କଣ୍ଠରେ କହିଲେ, ହଁ ମହାରାଜ ! ଜାଣେ ।

ରାଜା କହିଲେ— ତାହାହେଲେ କୁହ ।

ଆପଣଙ୍କ ରାଜମହଲର କୁକୁରମାନେ ହିଁ ଏ ଅପରାଧ କରିଛନ୍ତି ମହାରାଜ । ବୋଧିସତ୍ତ୍ୱ ଉତ୍ତର ଦେଲେ ।

ଏହାର ପ୍ରମାଣ ଦେଇ ପାରିବ ? ରାଜା ପ୍ରଶ୍ନ କଲେ ।

ବୋଧିସତ୍ତ୍ୱ କହିଲେ, ପ୍ରମାଣ ଅବଶ୍ୟ ଦେବି । ଆପଣ ଦୟାକରି କିଛି ମହି ଓ କଅଁଳ ଦୁବ ପତ୍ର ମଗାନ୍ତୁ ।

ରାଜା ଏହାଶୁଣି ଅତିଶୀଘ୍ର ମହି ଓ କଅଁଳ ଦୁବପତ୍ର ମଗାଇଲେ ଏବଂ ବୋଧିସତ୍ତ୍ୱ, କହିବା ପ୍ରକାରେ ଦୁବପତ୍ରକୁ ମହି ସଙ୍ଗରେ ମଣ୍ଡି ରାଜମହଲ ମଧ୍ୟରେ ଥିବା କୁକୁରମାନଙ୍କୁ ପିଆଇ ଦେଲେ । ଏହା ପିଇବା ପରେ ରାଜମହଲର କୁକୁରମାନେ ବାନ୍ତି କରିବାକୁ ଲାଗିଲେ । ସେହି ବାନ୍ତି ଦେହରେ ରଥର ଚମଡା ଅଂଶ ଓ ଚମ ଦଉଡି ସବୁ ବାହାରିଲା ।

ଏହା ଦେଖିବା ପରେ ରାଜା ବୁଝିଲେ, କୁକୁରଟି କେବଳ ମାତ୍ର କୁକୁର ନୁହେଁ । ସେ ଏକ ମହାନ୍ ଆତ୍ମାର ପରିପ୍ରକାଶ । ନ ହେଲେ ଏହି ପ୍ରକାର ଉପାୟ ଅବଲମ୍ବନ କରି ସତ୍ୟ ପ୍ରକଟ କରି ଥାଆନ୍ତା କେମିତି । ତେଣୁ ସେ କୁକୁରକୁ ଶ୍ୱେତଛତ୍ର ଦେଇ ପୂଜା କରିବାକୁ ଲାଗିଲେ ।

ବୋଧିସତ୍ତ୍ୱ ଏହାପରେ ରାଜାଙ୍କୁ ଧର୍ମ ଉପଦେଶ ଦେଇ କହିଲେ, ଆପଣ କେବେହେଲେ ଏହି ପ୍ରକାର ଭୁଲ କରନ୍ତୁ ନାହିଁ ।

ରାଜା ନିଜ ଦେଶରେ ଥିବା ସମସ୍ତ କୁକୁର ସମେତ ଜନ ପ୍ରାଣୀଙ୍କୁ ଅଭୟ ପ୍ରଦାନ କଲେ ଓ ରାଜକୋଷରୁ ଭରଣପୋଷଣ ଚର୍ଚ୍ଚା କଲେ । ଅନ୍ତଲୋକରେ ସେହି ରାଜା ସ୍ୱର୍ଗଲୋକରେ ସ୍ଥାନ ପାଇଲେ ।

●



ଅନେକ ଦିନ ତଳର କଥା । କାଶୀ ନଗରୀରେ ରାଜା ବ୍ରହ୍ମଦତ୍ତ ରାଜୁତି କରୁଥିଲେ । ସେହି ସମୟରେ ବୋଧିସତ୍ତ୍ୱ ଏକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କଲେ । ବଡ ହୋଇ ସେ ତକ୍ଷଶିଳା ଗଲେ ଓ ସେଇଠି ବିଦ୍ୟାଧ୍ୟୟନ ସମାପ୍ତ କରିବା ପରେ ହିମାଳୟ ପ୍ରଦେଶରେ ବସବାସ କରିବାକୁ ଲାଗିଲେ । ଠିକ୍ ସେତିକିବେଳେ କୌଣସି ପୁଣ୍ୟାତ୍ମା ସ୍ୱର୍ଗଲୋକରୁ ଆସି ସେହି ପ୍ରଦେଶର ଏକ ପଦ୍ମ ସରୋବରରେ ଗୋଟିଏ କମଳକନ୍ୟା ହୋଇ ଜନ୍ମଗ୍ରହଣ କଲେ ।

କିଛିଦିନ ପରେ ସ୍ୱାଭାବିକ ରୀତିରେ ପଦ୍ମସରୋବରର ସମସ୍ତ ପଦ୍ମଫୁଲ ଝଡିଗଲେ । କିନ୍ତୁ ଅବଶିଷ୍ଟ ରହିଗଲା ଗୋଟିଏ ମାତ୍ର ପଦ୍ମଫୁଲ । ସେହି ପଦ୍ମଫୁଲଟି ହୃଷ୍ଟପୁଷ୍ଟ ଓ ଅତି ସୁନ୍ଦର ଦେଖାଯାଉଥିଲା ।

ଦିନେ ବୋଧିସତ୍ତ୍ୱ ସେହି ସରୋବରକୁ ସ୍ନାନ କରିବାକୁ ଆସିଲେ । ସେ ସେହି ପଦ୍ମଫୁଲଟିକୁ ଦେଖି ଭାବିଲେ, 'ଏହି' ଏକମାତ୍ର ପଦ୍ମଫୁଲ ଏତେ ହୃଷ୍ଟପୁଷ୍ଟ ଓ ସୁନ୍ଦର ହେବା ମୂଳରେ ନିଶ୍ଚୟ କୌଣସି କାରଣ ଅଛି । ଏହା ଭାବି ସେ ପହଁରି ପହଁରି ଯାଇ ଉକ୍ତ ଫୁଲଟିକୁ ନିରେଖି ଦେଖିଲେ । ଆଶ୍ଚର୍ଯ୍ୟର ବିଷୟ, ତା' ଭିତରେ ଗୋଟିଏ ଅନିନ୍ଦ୍ୟ ସୁନ୍ଦରୀ କନ୍ୟା ଅଛି । ସେହି କନ୍ୟାଟିକୁ ସେ ନିଜ କୁଟୀରକୁ ନେଇ ଆସି କନ୍ୟାବତ ଲାଳନପାଳନ କରିବାକୁ ଲାଗିଲେ । ପଦ୍ମଫୁଲ ଭିତରେ କ'ଣ ଅଛି ଯେ ଏତେ ହୃଷ୍ଟପୁଷ୍ଟ ହୋଇଛି, ଏହି ଆଶଙ୍କା କରି ସେ ସରୋବର ଭିତରେ ପହଁରି ପହଁରି ପଦ୍ମଫୁଲ ନିକଟକୁ ଯାଇଥିଲେ । ସେଥିପାଇଁ ସେ କନ୍ୟାର ନାମ ଆଶଙ୍କା-କୁମାରୀ ରଖିଲେ ।

ସୁନ୍ଦର ଚନ୍ଦ୍ରମାର କଳା ନେଇ ସେ ଦିନକୁ ଦିନ ବଢ଼ିବାକୁ ଲାଗିଲା ଏବଂ ଷୋହଳ ବର୍ଷ ବୟସରେ ଗୋଟିଏ ଦରଫୁଟା ଫୁଲ ପରି ଅତି ସୁନ୍ଦର ଓ ଆକର୍ଷଣୀୟ ହୋଇ ଉଠିଲା ।

ଦିନେ ଇନ୍ଦ୍ରଦେବ ବୋଧିସତ୍ତ୍ୱଙ୍କର ଦର୍ଶନ ଲାଭ ସକାଶେ ଆଶ୍ରମକୁ ଆସିଲେ । ସେ ଯେତେବେଳେ ସେହି ପରମ ସୁନ୍ଦରୀ କନ୍ୟାର ଜୀବନ ବୃତ୍ତାନ୍ତ ଶୁଣିଲେ, ବୋଧିସତ୍ତ୍ୱଙ୍କୁ ନିଜ ପକ୍ଷରୁ କହିଲେ, ଏହି କନ୍ୟାଟିର ଭରଣ ପୋଷଣ ପାଇଁ ଆପଣ ଚିନ୍ତା କରିବା ଅନାବଶ୍ୟକ । ମୋତେ କଣ କରିବାକୁ ହେବ, ଆଜ୍ଞା କରନ୍ତୁ ।

ଏହାଶୁଣି ବୋଧିସତ୍ତ୍ୱ କହିଲେ, ହେ ବନ୍ଧୁ ! ଯଦି ଆପଣ ଆଗ୍ରହ ପ୍ରକାଶ କରୁଛନ୍ତି ତାହାହେଲେ କନ୍ୟାଟିର ରହିବା ପାଇଁ ଗୋଟିଏ ମର୍ମର ଗୃହ, ଶୟନ ସକାଶେ ସୁନ୍ଦର ଶଯ୍ୟା, ଭୋଜନ ପାଇଁ ସୁସ୍ୱାଦୁ ଦ୍ରବ୍ୟ ଓ ପିନ୍ଧିବା ପାଇଁ ଦିବ୍ୟସୁନ୍ଦର ଅଳଙ୍କାର ବନ୍ଦୋବସ୍ତ କରି ଦିଅନ୍ତୁ ।

ଇନ୍ଦ୍ର କହିଲେ, ଯଥା ଆଜ୍ଞା !

ଅତି ଶୀଘ୍ର ବୋଧିସତ୍ତ୍ୱଙ୍କ କହିବା ପ୍ରକାରେ ସବୁ ଜିନିଷ ଆୟୋଜନ ହୋଇଗଲା । ମର୍ମର ମହଲ ଏତେ ମସୃଣ ଥିଲା ଯେ କନ୍ୟାର ପଦ-ଦୁଇଟି ଚାଲିଲାବେଳେ ଖସି ଯାଉଥିଲା । ପୁଣି ପ୍ରାସାଦକୁ ଆବେଷ୍ଟଣ କଲାପରେ ମନେ ହେଉଥିଲା, ଯେପରି ଅବା ଆକାଶ ଦେହରେ ସୁନ୍ଦର କଣ୍ଢେଇଟିଏ ଝୁଲା ଯାଇଛି । ସକାଳୁ ଆଶ୍ରମକୁ ସଫା ସୁତରା କରିବାକୁ ସେ ମର୍ମର ମହଲରୁ କୁଟୀରକୁ ଆସୁଥିଲା ଓ ସମଗ୍ର ଦିବସଟା ପିତାଙ୍କ ସେବାରେ ବ୍ୟସ୍ତ ରହୁଥିଲା ।

ଥରେ ଗୋଟିଏ ବନଚର ସେହି ପରମାସୁନ୍ଦରୀ କନ୍ୟାକୁ ଦେଖି ବୋଧିସତ୍ତ୍ୱଙ୍କୁ ପ୍ରଶ୍ନକଲା, ହେ ଦେବ ! ଏ କନ୍ୟା ଆପଣଙ୍କର କଣ ହେବ କି ?

କନ୍ୟାଟି ମୋର ପାଳିତା କନ୍ୟା । ବୋଧିସତ୍ତ୍ୱ ଉତ୍ତର ଦେଲେ ।

ଲୋଭସକ୍ତ ହୋଇ ସେହି ବନଚର ବାରାଣସୀର ରାଜାଙ୍କୁ ସାକ୍ଷାତ କଲା ଏବଂ କହିଲା, ମହାରାଜ ! ହିମାଳୟ ପ୍ରଦେଶରେ ରହୁଥିବା ତପସ୍ୱୀଙ୍କର ଗୋଟିଏ ପରମାସୁନ୍ଦରୀ କନ୍ୟା ଅଛି । ସେହି କନ୍ୟା ରାଜଭବନରେ ଶୋଭା ପାଇବା ପାଇଁ ଯୋଗ୍ୟା ।

କନ୍ୟାର ରୂପ ଗୁଣ ଶୁଣି ରାଜା ମୁଗ୍ଧ ହେଲେ ଏବଂ ସୈନ୍ୟ-ମାନଙ୍କୁ ସଙ୍ଗରେ ନେଇ ବୋଧିସତ୍ତ୍ୱଙ୍କ ଆଶ୍ରମାଭିମୁଖେ ଅଗ୍ରସର ହେଲେ । ଆଶ୍ରମକୁ ଆଉ କିଛି ରାସ୍ତା ଅଛି, ସେ ରହିବା ପାଇଁ ତମ୍ବୁ ପକାଇଲେ । ସେଇଠୁ ମନ୍ତ୍ରୀମାନଙ୍କୁ ସଙ୍ଗରେ ନେଇ ବୋଧିସତ୍ତ୍ୱଙ୍କ ଦର୍ଶନ ପାଇଁ ଆଶ୍ରମ ନିକଟକୁ ଗଲେ ।

ରାଜା ବୋଧିସତ୍ତ୍ୱଙ୍କ ଦର୍ଶନ ପାଇ ପ୍ରଣାମ ଜଣାଇଲେ ଏବଂ କୁଶଳ ପ୍ରଶ୍ନ କଲେ । ତା' ପରେ କଥାପ୍ରସଙ୍ଗରେ ରାଜା କହିଲେ, ବ୍ରହ୍ମଚାରୀଙ୍କ ଆଶ୍ରମରେ ସ୍ତ୍ରୀଲୋକ ରହିବା ସୁବିଧାଜନକ ନୁହେଁ; ତେଣୁ ସବୁଠାରୁ ଭଲ ହେବ, ଯଦି ଆପଣ ଆପଣଙ୍କ କନ୍ୟାକୁ ମୋତେ ଅର୍ପଣ କରନ୍ତି ।

ବୋଧିସତ୍ତ୍ୱ ଦେଖିଲେ, ପ୍ରସ୍ତାବଟି ମନ୍ଦ ନୁହେଁ । ସବୁ ଦିଗରୁ ରାଜା ଉକ୍ତ କନ୍ୟାପାଇଁ ଯୋଗ୍ୟ ଅଟନ୍ତି । ତଥାପି ରାଜାଙ୍କର ବୁଦ୍ଧି ଓ ଧୈର୍ଯ୍ୟ ପରୀକ୍ଷା କରି ଦେଖିବା ଉଚିତ । ସେଥିପାଇଁ ସେ କହିଲେ, କନ୍ୟା ଅର୍ପଣ କରିବାରେ ଆପତ୍ତି ନାହିଁ । କିନ୍ତୁ ତତ୍‌ପୂର୍ବରୁ ତୁମେ ତାର ଅସଲ ନାଁ ସଂଗ୍ରହ କରିବାକୁ ପଡ଼ିବ । ହଁ, ମନେରଖ, ବର୍ଷକ ଭିତରେ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଦିନ ତୁମେ ତାର ନାମ କହିବାର ସୁବିଧା ପାଇବ ।

ତା'ପର ଦିନ ରାଜା ମନ୍ତ୍ରୀମାନଙ୍କର ପରାମର୍ଶକ୍ରମେ ଗୋଟିଏ ସୁନ୍ଦର ଓ ଅସାଧାରଣ ନାମର ତାଲିକା ପ୍ରସ୍ତୁତ କରି ତହିଁରେ ଶତାଧିକ ନାମ ତାଲିକା ରଖିଲେ । କିନ୍ତୁ ପରିଶେଷରେ ସେ ଶୁଣିଲେ ଯେ, ତାଲିକାଭୁକ୍ତ କୌଣସିଟି ନାମ ସେହି କନ୍ୟାର ନୁହେଁ । ତେଣୁ ରାଜା ବଡ ନିରାଶ ହେଲେ । ସେହି ଜଙ୍ଗଲ ଭିତରେ ପଡି ରହିବାଦ୍ୱାରା ରାଜାଙ୍କର ଅନେକ କ୍ଷତି ହେଲା । ଲୋକମାନେ ଅନାହାରେ ମରିବାକୁ ଲାଗିଲେ । ଜଙ୍ଗଲର ହିଂସ୍ରଜନ୍ତୁମାନେ ଘୋଡାମାନଙ୍କୁ ମାରିବାକୁ ଲାଗିଲେ । ପରାଜୟରେ ରାଜା ନିଜ ରାଜଧାନୀକୁ ଫେରି ଆସିବା କଥା ଚିନ୍ତା କଲେ । ବୋଧିସତ୍ତ୍ୱଙ୍କୁ ଫେରିବା କଥା ଜଣାଇ ଦେବା ପରେ ସେ ନିଜ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କରୁଛନ୍ତି, ପଥପାର୍ଶ୍ୱରେ ମର୍ମର ମହଲର ଗବାକ୍ଷ ଦେଶରେ ସେହି ପରମାସୁନ୍ଦରୀ କନ୍ୟାକୁ ଛିଡା ହୋଇଥିବା ଦେଖିଲେ । ସେ ସେହି ସୁନ୍ଦରୀ ଉଦ୍ଦେଶ୍ୟରେ କହିଲେ; ହେ ସୁନ୍ଦରି ! ମୁ ତୁମ ନାମ ଜାଣି ନ ପାରି ନିରାଶରେ ଫେରି ଯାଉଛି ।

ସେହି କୁମାରୀ ମଧ୍ୟ ରାଜାଙ୍କୁ ଦେଖି ମୁଗ୍ଧ ହୋଇ ଯାଇଥିଲା । ତେଣୁ ସେ ମହାରାଜାଙ୍କୁ ସମ୍ବୋଧନ କରି କହିଲା, ମହାରାଜ ! ସ୍ତ୍ରୀ-ରତ୍ନ ଲାଭ କରିବା ପାଇଁ ଯତ୍ନ କରିବାକୁ ପଡ଼ିଥାଏ । ଆପଣ କଣ ଶୁଣି ନାହାନ୍ତି ଯେ, 'ଚିତ୍ତଲତା' ବଣରେ ଆଶାବତୀ ନାମରେ ଗୋଟିଏ ଲତା ଥାଏ ! ସେ ହଜାରେ ବର୍ଷ ବ୍ୟବଧାନରେ କେବଳ ଗୋଟିଏ ଥର ଫଳଦାନ କରିଥାଏ । ଦେବପୁତ୍ର ତାରି ରସ ପାନ ଉଦ୍ଦେଶ୍ୟରେ ହଜାରେ ବର୍ଷକାଳ ସେହି ବୃକ୍ଷର ସେବା କରେ । ଏହିପରି ଚେଷ୍ଟା ଫଳବତୀ ହେଲେ ସୁଖ ପ୍ରଦାନ କରିଥାଏ । କିନ୍ତୁ ସେଥିପାଇଁ ଧୈର୍ଯ୍ୟ ସହକାରେ ଯତ୍ନ କରିବାକୁ ପଡ଼ିଥାଏ ।

ସେହି ପରମ ରୂପବତୀର କଥା ଶୁଣି ରାଜା ନିଜ ମଧ୍ୟରେ ପୁଣି ଧୈର୍ଯ୍ୟ ବାନ୍ଧିଲେ ଓ ପୁନର୍ବାର ପ୍ରକୃତ ନାମ ସନ୍ଧାନରେ ଲାଗି ପଡ଼ିଲେ । ଏହିପରି ଭାବରେ ଆହୁରି ଏକବର୍ଷ ବିତିଗଲା । କିନ୍ତୁ ରାଜାଙ୍କୁ ତଥାପି ସଫଳତା ମିଳିଲା ନାହିଁ । ତେଣୁ ରାଜା ନିରାଶରେ ପୁଣି ଥରେ ଫେରିଯିବାକୁ ମନସ୍ଥ କଲେ । ପୁନର୍ବାର ପର୍ଣ୍ଣକୁଟୀରରୁ ପ୍ରତ୍ୟାବର୍ତ୍ତନ କରୁଅଛନ୍ତି, ସେହି ସୁନ୍ଦରୀ କନ୍ୟାକୁ ଗବାକ୍ଷ ନିକଟରେ ଦଣ୍ଡାୟମାନ ହୋଇଥିବା ଦେଖି ପାରିଲେ ।

ରାଜା କୁମାରୀ ଉଦ୍ଦେଶ୍ୟରେ କହିଲେ, ହେ ସୁନ୍ଦରି ! ମୁଁ ହାରିଗଲି । ବର୍ତ୍ତମାନ ଆଉ ଗୋଟିଏ ଦିନ ବି ଏଠାରେ ରହିବା ମୋ ପକ୍ଷରେ କଠିନ । କାଲି ନିଶ୍ଚୟ ଆମେ ଏଠାରୁ ଫେରିଯିବୁ । ଦୁଃଖ ରହିଗଲା, ମୋତେ ତୁମର ନାମଟା ଜଣା ପଡ଼ିଲା ନାହିଁ ।

ଏହାଶୁଣି କୁମାରୀ କହିଲା, ମହାରାଜ ! ନିରାଶ ହୁଅନ୍ତୁ ନାହିଁ । ଆଶା ଅବଶ୍ୟ ଫଳବତୀ ହୁଏ । ଆପଣ କଣ ସେହି ବଗୁଲୀ କାହାଣୀ ଶୁଣି ନାହାନ୍ତି ? ଗୋଟିଏ ବଗୁଲୀ ନିଜ ଚଞ୍ଚୁରେ ମାଛଟିଏ ନେଇ ପାହାଡ଼ର ଶିଖର ଦେଶରେ ଯାଇ ବସିଥିଲା । ପରଦିନ ସେ ସେଇଠି ବସି ବସି ଭାବିବାକୁ ଲାଗିଲା, ଆଃ, ଯଦି ମୋତେ ଏଇଠି ଆଧାର ଓ କିଛି ଜଳ ମିଳି ଯାଆନ୍ତା, କେତେ ଭଲ ହୁଅନ୍ତା ନାହିଁ ସତରେ ! ଠିକ୍ ସେହିଦିନ ଦେବରାଜ ଇନ୍ଦ୍ର ଅସୁରଙ୍କ ଉପରେ ବିଜୟ ଲାଭ କରିଥିଲେ । ସେ ଭାବୁଥିଲେ, ଆଜି ମୋର ମନୋରଥ ପୂର୍ଣ୍ଣ ହୋଇଛି । ସେଥିପାଇଁ କୌଣସି ପ୍ରାଣୀର ମନୋରଥ ଅପୂର୍ଣ୍ଣ ରହିବା ଉଚିତ ନୁହେଁ । ବାସ୍, ଏତିକି ଭାବି ସେ ଧ୍ୟାନରେ ବସିଗଲେ । ଧ୍ୟାନ ଯୋଗେ ସେ ବଗୁଲୀର ଇଚ୍ଛା ଜାଣି ପାରିଲେ । ପାହାଡ଼ ତଳେ ଗୋଟିଏ ଝରଣା ବୋହିଯାଉଥିଲା, ଇନ୍ଦ୍ର ସେହି ନଦୀରେ ବନ୍ୟା ସୃଷ୍ଟି କଲେ । ସେହି ବନ୍ୟା ଜଳ ବଗୁଲୀ ପର୍ଯ୍ୟନ୍ତ ପହୁଞ୍ଚିଗଲା । ବଗୁଲୀ ପାହାଡ଼ ଉପରେ ବସି ମାଛ ଧରି ଖାଇଲା ଏବଂ ପାଣି ପିଇଲା । ସେ ତୃପ୍ତ ହେଲା । ଯଦି ଏପରି ଭାବରେ ଗୋଟିଏ ପକ୍ଷୀର ଇଚ୍ଛାପୂରଣ ହୋଇ ପାରିଲା, ତାହାହେଲେ ଆପଣଙ୍କ ଇଚ୍ଛା ପୂରଣ ହେବ ନାହିଁ କାହିଁକି ?

ରାଜା ସେହି କୁମାରୀ କନ୍ୟାର ରୂପ ଓ ଗୁଣରେ ବିମୁଗ୍ଧ ହୋଇ ଫେରିବା ବିଷୟ ବନ୍ଦ କଲେ । ଆହୁରି ଏକ ବର୍ଷ ନାମ ବୁଝୁ ବୁଝୁ ବିତିଗଲା । ରାଜା ପୁଣି ଥରେ ନାମ ଜାଣି ନ ପାରି ଫେରିବା ପାଇଁ ପ୍ରସ୍ତୁତ ହେଲେ । ସେଦିନ ପୁଣି ମର୍ମର-ମହଲର ଗବାକ୍ଷ ନିକଟରେ ସେହି ସୁନ୍ଦରୀ ଛିଡ଼ା ହୋଇଥିବା ଦେଖିଲେ । ରାଜା ତାଙ୍କୁ ଦେଖି କହିଲେ, ହେ କୁମାରି ! ବର୍ତ୍ତମାନ ବିଦାୟ ଦିଅ ! ମୁଁ ଏଇଠି ସବୁ ହରାଇ ଖାଲି ଧୈର୍ଯ୍ୟ ଧରି ପଡ଼ିରହିଛି । ତୁମେ ତୁମର ମିଠା ମିଠା କଥାରେ ମୋତେ ଯିବାକୁ ନ ଦେଇ ଭୁଲାଇ ରଖିଛ । କିନ୍ତୁ ଏବେ ତୁମେ ଏଇ ନିର୍ଜନ ହିମାଳୟରେ ଏକାକୀ ରୁହ । ମୁଁ ଆଉ ଏଇଠି ରହି ପାରିବି ନାହିଁ । ମୋ' ସଙ୍ଗରେ ଆସିଥିବା ସେନାବାହିନୀ କଷ୍ଟ ଭୋଗ କରୁଛନ୍ତି । ମୋ' ନିଜ ପ୍ରାଣ ଉପରେ ବି' ଆଶଙ୍କା ଦେଖା ଦେଲାଣି । ଅତି ଦୁଃଖର ସହିତ ମୁଁ ଏଠାରୁ ଚାଲିଯାଉଛି ।

ରାଜାଙ୍କ ମୁହଁରେ ଆଶଙ୍କା ଶବ୍ଦ ଉଚ୍ଚାରଣ ଶ୍ରବଣ କରି କନ୍ୟାଟି ଅତ୍ୟନ୍ତ ପ୍ରସନ୍ନ ହେଲା ଏବଂ କହିଲା, ମହାରାଜ ! ଆପଣ ମୋ' ନାମ ଉଚ୍ଚାରଣ କରି ସାରିଛନ୍ତି । ତାହାହିଁ ମୋର ନାମ । ସେହି ନାମ ମୋର ପିତାଙ୍କୁ କହି, ମୋତେ ଆପଣ ସଙ୍ଗରେ ନେଇ ଯାଆନ୍ତୁ । ଆପଣ ଟିକିଏ ଅପେକ୍ଷା କରନ୍ତୁ ! ମୁଁ ବାପାଙ୍କୁ ଡାକି ଆଣୁଛି । ନ ହେଲେ, ଆପଣ ନିଜେ ତାଙ୍କ କୁଟୀରକୁ ଚାଲି ଯାଆନ୍ତୁ !

ରାଜା ଏହାଶୁଣି ପ୍ରସନ୍ନ ହୋଇ ବୋଧିସତ୍ତ୍ୱଙ୍କ ନିକଟକୁ ଗଲେ ଓ ତାଙ୍କୁ ପ୍ରଣାମ ଜଣାଇ କହିଲେ, ହେ ଦେବ ! ଆପଣଙ୍କ କନ୍ୟାର ନାମ 'ଆଶଙ୍କା' ଅଟେ ।

ବୋଧିସତ୍ତ୍ୱ କହିଲେ, ହେ ରାଜା ! ବର୍ତ୍ତମାନ ତୁମେ ମୋ' କନ୍ୟାର ନାମ ଜାଣି ପାରିଛ । ବର୍ତ୍ତମାନ କୁମାରୀକୁ ତୁମକୁ ସମର୍ପଣ କଲି । ତୁମେ ତାକୁ ସଙ୍ଗରେ ନେଇଯାଇପାର ।

ରାଜା ମର୍ମର-ମହଲର ନିକଟବର୍ତ୍ତୀ ହୋଇ କହିଲେ, ହେ ଭଦ୍ରେ ! ଆଜି ତୁମ ପିତା ତୁମକୁ ମୋ' ହସ୍ତରେ ସମର୍ପଣ କଲେ । ଆସ ! ମୋ' ସଙ୍ଗରେ ଚାଲିଆସ ।

ରୂପସୀ କନ୍ୟା ଏହାଶୁଣି ଆମୋଦିତ ହୋଇ କହିଲା, ହେ ମହାରାଜ । ସାମାନ୍ୟ ଅପେକ୍ଷା କରନ୍ତୁ । ମୁଁ ପିତାଙ୍କୁ ସାକ୍ଷାତ କରି ଆସେ ।

ଏହା କହି କୁମାରୀଟି ମର୍ମର-ମହଲରୁ ଓହ୍ଲାଇ ଆସି ପିତାଙ୍କୁ ସାକ୍ଷାତ କଲା । ସେ ପିତାଙ୍କର ପାଦ ଛୁଇଁ ସାଷ୍ଟାମ ହେଲା ଓ କ୍ଷମା ମାଗିଲା । ତା'ପରେ କାନ୍ଦି କାନ୍ଦି ବିଦାୟ ଗ୍ରହଣ କଲା ।

ରାଜା ଏହାପରେ ଆଶଙ୍କା କୁମାରୀକୁ ସଙ୍ଗରେ ନେଇ ନିଜ ରାଜ୍ୟକୁ ଫେରି ଆସିଲେ । ରାଜ୍ୟର ପ୍ରଜାମାନେ ମହାରାଜାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ ।

ରାଜା ଓ ରାଣୀ ଯଥାସମୟରେ ସନ୍ତାନ ଲାଭ କରି ଧର୍ମାଚରଣ ପୂର୍ବକ ରାଜ୍ୟ ଶାସନ କଲେ ଓ ସୁଖରେ କାଳ କାଟିଲେ ।





ବହୁଦିନ ପୂର୍ବେ ବାରାଣସୀରେ ବ୍ରହ୍ମଦତ୍ତ ନାମରେ ଜଣେ ରାଜା ରାଜୁତି କରୁଥିଲେ ।

ସେ ସମୟରେ ବୋଧିସତ୍ତ୍ୱ ଦେବଲୋକରେ ଏକ ଦେବପୁତ୍ର ରୂପେ ଜନ୍ମ ହୋଇଥିଲେ ।

ସେତେବେଳେ ବାରାଣସୀରେ ଗୋଟିଏ ମହୋତ୍ସବର ଆୟୋଜନ ହୋଇଥିଲା । ଦୂରଦୂରାନ୍ତରରୁ ଲୋକେ ସେହି ଉତ୍ସବ ଦେଖିବାକୁ ଆସିଲେ । ସ୍ୱର୍ଗର ଦେବତାମାନେ ମଧ୍ୟ ଉକ୍ତ ଉତ୍ସବ ଦେଖିବାକୁ ଦେବଲୋକ ଛାଡ଼ି ବାରାଣସୀ ଆସିଲେ । ଉତ୍ସବରେ ଚାରି-ଜଣ ଦେବପୁତ୍ର ମଧ୍ୟ ଉପସ୍ଥିତ ଥିଲେ । ଦେବପୁତ୍ରମାନେ ମସ୍ତକରେ ପୁଷ୍ପର ଗୋଟିଏ ଗୋଟିଏ ମାଳା ପିନ୍ଧିଥିଲେ । ସେ ପୁଷ୍ପମାଳ ସବୁ ଅସାଧାରଣ ଫୁଲରେ ଗୁନ୍ଥା ହୋଇଥିଲା । ଫୁଲର ମହକରେ ଚାରି ଯୋଜନବ୍ୟାପୀ ଚାରିଦିଗଯାକ ମହକି ଉଠୁଥିଲା । ଲୋକମାନେ ସେହି ସୁଗନ୍ଧରେ ଆମୋଦିତ ହୋଇ, କିଏ ତାହା ପରିଧାନ କରିଛି, ମନେ ମନେ ସନ୍ଧାନ ନେଲେ । ବହୁ ସମୟ ଅନୁସନ୍ଧାନ କରିବା ପରେ ମଧ୍ୟ ପରିଧାନକାରୀର ସନ୍ଧାନ ମିଳିଲା ନାହିଁ । ଦେବପୁତ୍ରମାନେ ଯେତେବେଳେ ଜାଣିବାକୁ ପାଇଲେ ଯେ, ଲୋକେ ସେମାନଙ୍କୁ ହିଁ ଖୋଜିବୁଲୁଛନ୍ତି, ସେମାନେ ନିଜେ ନିଜକୁ ପ୍ରକଟ କରିଦେଲେ ।

ଲୋକମାନେ ସେହି ଚାରିଜଣ ଦେବପୁତ୍ରଙ୍କୁ ପ୍ରଶ୍ନ କଲେ, ଆପଣମାନେ କେଉଁଠୁ ଆସିଛନ୍ତି ? ଆପଣମାନେ ଯେଉଁ ଫୁଲ ଲଗାଇ ଆସିଛନ୍ତି ତାର ନାମ କଣ ?

ଦେବପୁତ୍ରମାନେ ଉତ୍ତର ଦେଲେ, ଆମେ ଦେବଲୋକରୁ ଆସିଛୁ ଓ ଫୁଲର ନାମ 'ପାରିଜାତ' ଅଟେ ।

ଲୋକେ କହିଲେ, ଏ ଫୁଲ ଆପଣମାନେ ଆମକୁ ଦେଇଦିଅନ୍ତୁ। କାରଣ ଦେବଲୋକରେ ଆପଣ ଆହୁରି ଅନେକ ଫୁଲ ପାଇବେ। କିନ୍ତୁ ଏ ଫୁଲ ଏଇଠି ମିଳୁନାହିଁ।

ଏହାଶୁଣି ଦେବପୁତ୍ରମାନେ କହିଲେ, କିନ୍ତୁ ଏ ଫୁଲକୁ ତ ସାଧାରଣ ଲୋକେ ପିନ୍ଧି ପାରିବେ ନାହିଁ।

ଉତ୍ତର ଶୁଣି ସାଧାରଣ ଲୋକେ ବିସ୍ମୁଧ ହେଲେ। କହିଲେ, ମହାରାଜ ! ଅନ୍ତତଃ ଆମକୁ କହନ୍ତୁ, କେଉଁ ଅସାଧାରଣ ଗୁଣର ଅଧିକାର ହେଲେ ଏ ଫୁଲ ପିନ୍ଧାଯାଇ ପାରିବ ?

ଏ ପ୍ରଶ୍ନ ଶୁଣି ଦେବପୁତ୍ରମାନଙ୍କ ମଧ୍ୟରେ ଥିବା ଜ୍ୟେଷ୍ଠ ଦେବପୁତ୍ର କହିଲେ, ଏ ଫୁଲ ମର୍ତ୍ତ୍ୟଲୋକରେ ଥିବା ଦୁଷ୍ଟ, ମୂର୍ଖ, ଅବିଚାରୀ ଏବଂ ଦୁଷ୍ଟଚରିତ୍ରଲୋକଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ। କିନ୍ତୁ ଯେଉଁ ଲୋକ ଚୋରି କରେ ନାହିଁ, ମିଥ୍ୟା କହେ ନାହିଁ, ଧନ ସମ୍ପଦ ଲୋଭୀ ନୁହେ ସିଏ କେବଳ ଏ ଫୁଲ ପିନ୍ଧିପାରିବ। ଯାହା ପାଖରେ ଆମ କହିବା ମୁତାବକ ଗୁଣ ଅଛି, ସେ ଆମକୁ ଏ ଫୁଲହାର ମାଗିଲେ ଆମେ ଅବଶ୍ୟ ଦାନ କରିବୁ।

ଜଣେ ପୁରୋହିତ ଦେବପୁତ୍ରମାନଙ୍କର ସମସ୍ତ କଥା ଶୁଣୁଥିଲା। ସେ ମନେ ମନେ ଭାବିଲା, ମୋ' ପାଖରେ ଯଦିଓ ଦେବପୁତ୍ର ବର୍ଣ୍ଣିତ ଗୁଣମାନ ନାହିଁ, ତଥାପି ସେ ସବୁ ମୋ' ପାଖରେ ଅଛି ବୋଲି ମିଛ କହି, ମୁଁ ଏ ଫୁଲହାର ସବୁ ପାଇ ପାରିବି। ଏହା ବିଚାର କରି ସେ ଦେବପୁତ୍ରମାନଙ୍କ ସାମନାକୁ ଆସି କହିଲା, ଆପଣ କହିବା ପ୍ରକାରେ ମୋ' ପାଖରେ ସମସ୍ତ ଗୁଣ ଅଛି। ମୋତେ ଫୁଲ ମାଳ ଦିଅନ୍ତୁ।

ପୁରୋହିତ ମିଛକଥା କହି ସେହି ଅସାଧାରଣ ଫୁଲର ମାଳା ହାସଲ କଲା ଓ ନିଜେ ପିନ୍ଧି ପକାଇଲା।

ଦ୍ୱିତୀୟ ଦେବପୁତ୍ର କହିଲେ, ମୋ' ଫୁଲମାଳ କେବଳ ସେହି ବ୍ୟକ୍ତି ଧାରଣ କରିପାରିବ, ଯିଏ ଲୋକଙ୍କୁ ଠକି ଧନ ଉପାର୍ଜନ କରେ ନାହିଁ ଓ ମାଦକ ଦ୍ରବ୍ୟ ସେବନ କରେ ନାହିଁ।

ପୁରୋହିତ କହିଲା, ଆପଣଙ୍କ କହିବା ମୁତାବକ ଗୁଣର ଅଧିକାରୀ ମୁଁ ଅଟେ। ତେଣୁ ମୋତେ ଆପଣ ଆପଣଙ୍କ ଫୁଲହାରଟି ଦିଅନ୍ତୁ।

ଏ ପ୍ରକାର ମିଛକଥା କହି ସେ ଦ୍ୱିତୀୟ ଦେବପୁତ୍ରର ଫୁଲମାଳଟି ହାସଲ କଲା।

ତୃତୀୟ ଦେବପୁତ୍ର କହିଲେ, ଯାହାର ଚିତ୍ତ ଚଞ୍ଚଳ ନୁହେଁ, ଯାହାର ପ୍ରେମ ଅସ୍ଥିର ନୁହେଁ ଯିଏ ଶ୍ରଦ୍ଧାବାନ୍ ଅଟେ ଓ ଯିଏ ସୁସ୍ୱାଦୁ ଜିନିଷ ପାଇଲେ ଏକାକୀ ଖାଇଯାଏ ନାହିଁ, ସେହି କେବଳ ମୋ ଫୁଲହାର ପିନ୍ଧି ପାରିବ।

ପୁରୋହିତ କହିଲା, ସେ ସେହି ଗୁଣମାନଙ୍କର ମଧ୍ୟ ଅଧିକାରୀ ଅଟେ । ଏହା କହି ସେ ତୃତୀୟ ଫୁଲହାର ମଧ୍ୟ ହାସଲ କଲା ।

ଚତୁର୍ଥ ଦେବପୁତ୍ର କହିଲେ, ମୋ' ଫୁଲହାର ସେହି ଲୋକ କେବଳ ପିନ୍ଧି ପାରିବ, ଯିଏ ଆଗରେ ହେଉ କି ପଛରେ ହେଉ, ସାଧୁ ଲୋକଙ୍କର ଦୁର୍ନାମ ରଟନା କରେ ନାହିଁ ।

ଦୁଷ୍ଟ ପୁରୋହିତ ସଙ୍ଗେ ସଙ୍ଗେ କହିଲା, ଏ ଗୁଣ ମଧ୍ୟ ମୋ' ପାଖରେ ଅଛି । ଏହାପରେ ସେ ଚତୁର୍ଥ ଫୁଲମାଳଟି ମଧ୍ୟ ହାସଲ କଲା ।

ବର୍ତ୍ତମାନ ପୁରୋହିତର ଆନନ୍ଦ ଦେଖେ କିଏ ? ଯାହାହେଉ ନିଜ ବୁଦ୍ଧିରେ ସବୁତକ ଫୁଲମାଳ ହାସଲ କରି ମୁଣ୍ଡରେ ପିନ୍ଧିଲା । ତହିଁରେ ସେ ଖୁବ୍ ସୁନ୍ଦର ଦେଖାଗଲା ।

କିନ୍ତୁ ସେ ଅତିଶୀଘ୍ର ବୁଝି ପାରିଲା ଯେ, ସେହି ଫୁଲହାର ସବୁ ଲୁହାର ପଟି ପରି ତାର ମୁଣ୍ଡକୁ ଜାବୁଡ଼ି ଧରୁଛି । ସଙ୍ଗେ ସଙ୍ଗେ ତାର ମୁଣ୍ଡ ବ୍ୟଥା ଆରମ୍ଭ ହେଲା । ସପ୍ତାହେ ଯାଏ ସେହି ଅସହ୍ୟ ଯନ୍ତ୍ରଣା ଭୋଗକଲା ।

ଲୋକମାନେ ପୁରୋହିତର ସେହି ଅବସ୍ଥା ଦେଖି ତାକୁ ଦୟା କଲେ । ସେମାନେ ସମସ୍ତେ ଯାଇ ରାଜାଙ୍କୁ ପ୍ରାର୍ଥନା କଲେ ଏବଂ କହିଲେ, ଦୟାକରି ଆପଣ ଆଉଥରେ ସେହି ମହୋତ୍ସବର ଆୟୋଜନ କରନ୍ତୁ । ତାହାହେଲେ ଯାଇ ଦେବପୁତ୍ରମାନେ ଆସିବେ ଓ ପୁରୋହିତଙ୍କ ଦୂରବସ୍ଥା ଲାଘବ କରିବେ ।

ରାଜା ଲୋକଙ୍କର ପ୍ରାର୍ଥନା ଗ୍ରହଣ କରି ମନ୍ତ୍ରୀଙ୍କ ସଙ୍ଗରେ ମନ୍ତ୍ରଣା କଲେ ଓ ଉତ୍ସବର ଆୟୋଜନ କଲେ ।

ଏହି ଆୟୋଜିତ ଉତ୍ସବରେ ପ୍ରଥମଥର ପରି ଭିଡ଼ ହେଲା । ଦେବପୁତ୍ରମାନେ ମଧ୍ୟ ଆସିଲେ । ଲୋକମାନେ ବ୍ରାହ୍ମଣର ବ୍ୟଥା ଦୂରୀକରଣ ସକାଶେ ଦେବପୁତ୍ରମାନଙ୍କୁ ପ୍ରାର୍ଥନା କଲେ ।

ଏ ସମସ୍ତଙ୍କର ଅନୁରୋଧକୁ ଦେବପୁତ୍ରମାନେ କିପରି ବା' ଟାଳିଦେଇ ପାରନ୍ତେ ? ଲୋକାରଣ୍ୟ ସଭାସ୍ଥଳୀରେ ସେମାନେ କହିଲେ, ସେହି ପୁରୋହିତ ନୀଚ, କୁକର୍ମୀ, ମୂର୍ଖ ଏବଂ ଦୁଷ୍ଟଲୋକ ଅଟେ । ସେ ଜାଣିଶୁଣି ଆମ ଆଗରେ ମିଛ କହିଲା ଓ ତାର ପ୍ରତିଫଳ ଭୋଗକଲା । ସେହି ଅସାଧାରଣ ଫୁଲ ପିନ୍ଧିବା ପାଇଁ ସେ ନିଜେ ଯୋଗ୍ୟ ନ ଥିଲା । ତେଣୁ ତାହା ପିନ୍ଧି କଷ୍ଟ ପାଇଲା । ଏହାକହି ସେମାନେ ପୁରୋହିତର ମସ୍ତକ ଦେଶରୁ ସେମାନଙ୍କ ପ୍ରଦତ୍ତ ଫୁଲମାଳସବୁ ଫିଟାଇ ଆଣିଲେ ଓ ଦେବଲୋକକୁ ପ୍ରତ୍ୟାବର୍ତ୍ତନ କଲେ ।

ଏଣେ କିନ୍ତୁ ପୁରୋହିତ ମସ୍ତକ ସବୁଦିନ ପାଇଁ ତଳକୁ ନଇଁଗଲା । କାରଣ ତାର ଅସଲ ଗୁଣଟା ସମସ୍ତଙ୍କ ଆଗରେ ପ୍ରକଟିତ ହୋଇ ଯାଇଥିଲା ।






ଥରେ ବୋଧିସତ୍ତ୍ୱ ବାରଣସୀର ଏକ ଗରିବ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାମାତା ନବଜାତ ଶିଶୁର ନାମ ଦେଲେ ସୁତନୁ । ବାଲ୍ୟକାଳରୁ ସେ ନିଜ ପିତାଙ୍କୁ ହରାଇ ବସିଲେ । ନିଜେ ମୂଲ ଲାଗି ସୁତନୁ ତାଙ୍କର ଓ ତାଙ୍କର ମାଆଙ୍କର ପାଳନ ପୋଷଣ କଲେ ।

ସେ ସମୟରେ ବାରଣସୀର ରାଜାଙ୍କର ଶିକାର ପ୍ରତି ଅତ୍ୟନ୍ତ ଶ୍ରଦ୍ଧା ଥିଲା । ଥରେ ରାଜା ହରିଣ ଶିକାର କରିବାକୁ ଜଙ୍ଗଲକୁ ଗଲେ । ହରିଣ ଖେଦାପାଇଁ ସମସ୍ତ ପ୍ରସ୍ତୁତି ହେଲା । ତହିଁରେ ସଂଯୋଗକୁ ଏକ ହରିଣ ଆସି ରାଜାଙ୍କ ସମ୍ମୁଖରେ ଦେଖାଦେଲା । ରାଜା ତା' ଉପରକୁ ତୀର ମାରିଲେ । କିନ୍ତୁ ସେ ତୀର ହରିଣ ଦେହରେ ବାଜିଲା ନାହିଁ । ସେ ରାଜାଙ୍କ କବଳରୁ ରକ୍ଷା ପାଇବା ସକାଶେ ଦ୍ରୁତ ଗତିରେ ପଳାୟନ କଲା । ଏହା ଦେଖି ରାଜା ମଧ୍ୟ ଅଶ୍ୱପୃଷ୍ଠରେ ଉପବେଶନ କରି ତାର ଅନୁଧାବନ କଲେ । ପଥ ପାର୍ଶ୍ୱରେ କ୍ଲାନ୍ତ ହୋଇ ହରିଣ ଯେତେବେଳେ ଛିଡ଼ା ହେଲା, ରାଜା ଅସ୍ତ୍ର ପ୍ରୟୋଗ କରି ତାକୁ ହତ୍ୟା କଲେ । ସେହି ମୃତ ହରିଣକୁ ଏକ ବୃକ୍ଷଶାଖାରେ ଝୁଲାଇ ରଖିଲେ ଓ ସେ ନିଜେ ତାଙ୍କ ଅନୁଚରମାନଙ୍କ ସଙ୍ଗରେ ବଟବୃକ୍ଷ ତଳେ ବିଶ୍ରାମ କରିବାକୁ ଲାଗିଲେ ।

ସେହି ବଟବୃକ୍ଷରେ ଗୋଟିଏ ଯକ୍ଷ ବାସ କରୁଥିଲା । ସେ କୁବେରଙ୍କଠାରୁ ଆଜ୍ଞା ପାଇଥିଲା ଯେ, ଯିଏ ସେହି ବୃକ୍ଷଶାଖାର ଛାୟା ତଳକୁ ଆସିବ, ତାକୁ ସେ ଭକ୍ଷଣ କରି ପାରିବ । ତେଣୁ ରାଜା ଯେତେବେଳେ ବୃକ୍ଷ ଛାୟା ତ୍ୟାଗ କରି ଯିବାକୁ ବସିଲେ, ଯକ୍ଷ ତାଙ୍କର ହସ୍ତ ଦୁଇଟି ଧରି ପକାଇ କହିଲା, ବର୍ତ୍ତମାନ ତୁ ଏଠୁ ଯାଇ ପାରିବୁ ନାହିଁ । ମୁଁ ଏହି ସ୍ଥାନର ଯକ୍ଷ-ରାଜା । ତୁ ମୋର ଭକ୍ଷ ଅଟୁ ।

ପରିସ୍ଥିତି ବିଷୟରେ ସଜାଗ ହୋଇ ରାଜା କହିଲେ, ମୋତେ ଛାଡ଼ି ହରିଣକୁ ଖାଇ ଯା । ଯଦି ମୋତେ ନ ଖାଇ ଛାଡ଼ିଦେବୁ, ତାହାହେଲେ ମୁଁ ପ୍ରତିଦିନ ଅନ୍ନ ଓ ଗୋଟିଏ କରି ଲୋକ ତୋର ଭୋଜନ ପାଇଁ ପଠାଉଥିବି ।

ଯକ୍ଷ ଦେଖିଲା, ଏହା ତା' ପକ୍ଷରେ ଲାଭଜନକ ପ୍ରସ୍ତାବ । ଏଠାରେ ବସି ରହି ପ୍ରତିଦିନ ଭୋଜନ ବ୍ୟବସ୍ଥା ହେବ । ତେଣୁ ସେ କହିଲା, ମୁଁ ଏଥିରେ ରାଜି । କିନ୍ତୁ ମନେରଖ, ଏଇଠୁ ମୁକ୍ତି ପାଇଯିବା ପରେ ମୋର ଭୋଜନ ବ୍ୟବସ୍ଥା କରିବାକୁ ଯେମିତି ଭୁଲି ନ ଯାଉ । ଯଦି ଦିନଟିଏ ସୁଦ୍ଧା ମୋ' ଭୋଜନରେ ବ୍ୟତିକ୍ରମ ହୁଏ, ତାହାହେଲେ ତୋତେ ଖାଇଯିବି ।

ରାଜା ଏହାଶୁଣି କହିଲେ, ମୁଁ ବାରାଣସୀର ରାଜା ଅଟେ । ମୋର କେଉଁ ଜିନିଷରେ ଅଭାବ ଅଛି ଯେ, ଏ ସର୍ତ୍ତ ପୂରଣ କରି ପାରିବି ନାହିଁ ?

ଯକ୍ଷ ରାଜାଙ୍କୁ ପ୍ରତିଜ୍ଞା କରାଇ ଛାଡିଦେଲା । ବାରାଣସୀରେ ପହୁଞ୍ଚି ରାଜା ମନ୍ତ୍ରୀମାନଙ୍କ ସଙ୍ଗରେ ଏହି ଘଟଣା ନେଇ ପରାମର୍ଶ କଲେ ।

ମନ୍ତ୍ରୀମାନେ ପ୍ରଶ୍ନ କଲେ, ହେ ମହାରାଜ ! ଭୋଜନ ଏହିପରି ଭାବରେ କେତେଦିନ ପର୍ଯ୍ୟନ୍ତ ପଠାଇବାକୁ ପଡିବ, ସେ ବିଷୟରେ କିଛି ନିଶ୍ଚୟ କରି ଅଛନ୍ତି ?

ରାଜା ସେ ପ୍ରଶ୍ନ ଶୁଣି କହିଲେ, ନାଁ ତ ! କେତେଦିନ ଭୋଜନ ପଠାଇବାକୁ ହେବ ସେ ସଂପର୍କରେ ମୁଁ ତ କୌଣସି କଥାବାର୍ତ୍ତା କରି ନାହିଁ !

ମନ୍ତ୍ରୀମାନେ କହିଲେ, ଆପଣ କିଛି ଠିକ୍ କାମ କଲେ ନାହିଁ ! ସେ ଯାହାହେଉ, ବନ୍ଦିଶାଳାରେ ମୃତ୍ୟୁଦଣ୍ଡ ଭୋଗୁଥିବା କେତେଜଣ ଅପରାଧୀ ଅଛନ୍ତି । କିଛିଦିନ ପର୍ଯ୍ୟନ୍ତ ସେମାନଙ୍କୁ ପଠାଇ କାମ ଚଳାଇ ନେଇ ହେବ ।

ରାଜା, ମନ୍ତ୍ରୀଙ୍କୁ କହିଲେ, ଯାହା କରିବାର କରନ୍ତୁ । କିନ୍ତୁ ମୋତେ ଯକ୍ଷ କବଳରୁ ରକ୍ଷା କରନ୍ତୁ ।

ପରଦିନଠାରୁ ବନ୍ଦିଶାଳାର ଜଣେ ଜଣେ କଏଦୀକୁ ମୁଣ୍ଡରେ ଭାତଥାଳୀ ଦେଇ ଯକ୍ଷ ପାଖକୁ ପଠାଇ ଦିଆଗଲା । ଯକ୍ଷ ଭାତ ଖାଇସାରି ଭାତଧରି ଆସିଥିବା ମଣିଷଟାକୁ ବି ଖାଇଯାଉଥିଲା । କିଛିଦିନ ପରେ ବନ୍ଦିଶାଳାର ସବୁ କଏଦୀ ଶେଷ ହୋଇଯିବା ପରେ ରାଜାଙ୍କୁ ମହା ଭାଲେଣି ପଡିଲା । ମନ୍ତ୍ରୀମାନେ ଚିନ୍ତିତ ରାଜାଙ୍କୁ ସାନ୍ତ୍ୱନା ଦେଇ କହିଲେ, ମହାରାଜ ଧନଲୋଭ ଜୀବନ ଅପେକ୍ଷା ବି ଅଧିକ ପ୍ରବଳ ଅଟେ । ଆପଣ ଗୋଟିଏ କାମ କରନ୍ତୁ । ମାହୁନ୍ତକୁ ଏକ ହଜାର ଟଙ୍କାର ଥଳୀ ଦେଇ ହାତୀ ଉପରେ ଛାଡି ଦିଅନ୍ତୁ । ସିଏ ଘୋଷଣା କରିବ ଯେ, ଯିଏ ଯକ୍ଷ ପାଖକୁ ଅନ୍ନ ନେଇ ଯିବାପାଇଁ ସମ୍ମତ ହେବ ସେ ସେହି ଏକ ହଜାର ଟଙ୍କାର ଥଳି ପାଇବ ।

ରାଜାଜ୍ଞା ଘୋଷଣା କରାଗଲା । ବୋଧିସତ୍ତ୍ୱ ସୁତନୁ ଭାବିଲେ, ଗୋଟିଏ ଓଳି ଆଧାର ଅନ୍ୱେଷଣ ପାଇଁ ମୋତେ ଅନେକ କଷ୍ଟ— କରିବାକୁ ପଡୁଛି । ମୋ' ମାଆ ଅର୍ଥ ଅଭାବରୁ ଅନେକ କଷ୍ଟଭୋଗ କରୁଛି । ମୋ' ମାଆର ଯଦି ଦୁଃଖ ଦୂର କରି ନ ପାରିଲି, ମୋ' ଜୀବନକୁ ଶତ ଧିକ୍ । ଯଦି ରାଜ-ଘୋଷିତ ଟଙ୍କା ନେଇ ମାଆଙ୍କୁ ଦେବି ଏବଂ ଯକ୍ଷକୁ ପରାଜିତ କରି କୁଶଳରେ ଫେରି ଆସିବି, ତେବେ କେତେ ଭଲ ହେବ ନାହିଁ ସତରେ ! ଯଦି ବା ଯକ୍ଷକୁ ପରାଜିତ କରି ନ ପାରେ ଓ ମୃତ୍ୟୁବରଣ କରେ, ତାହାହେଲେ ମୋ' ମାଆ ତ ସୁଖ ଓ ଆରାମରେ

ରହିପାରିବ । ଏହା ବିଚାର କରି ସେ ଦୁଇଥର ମାଆଙ୍କ ପାଖରେ ଉପସ୍ଥିତ ହୋଇ ଆଜ୍ଞା ମାଗିଲେ । କିନ୍ତୁ ତାଙ୍କୁ ମାତୃଆଜ୍ଞା ମିଳିଲା ନାହିଁ । କିନ୍ତୁ ତୃତୀୟ ଥର ସେ ମାଆଙ୍କ ଅନୁମତି ନ ନେଇ, ରାଜ-କର୍ମଚାରୀଙ୍କ ସମ୍ମୁଖରେ ହାଜର ହେଲେ ଏବଂ କହିଲେ, ମୁଁ ଯକ୍ଷ ନିକଟକୁ ଯିବାକୁ ପ୍ରସ୍ତୁତ ଅଛି । ମୋତେ ସେହି ଏକ ହଜାର ଟଙ୍କାର ଥଳି ଦିଅନ୍ତୁ ।

ବୋଧିସତ୍ତ୍ୱ ହଜାରେ ଟଙ୍କାର ଥଳି ନେଇ ମାଆଙ୍କୁ ଦେଲେ ଏବଂ କହିଲେ, ମାଆ ତୁମେ ମୋ' ପାଇଁ ଚିନ୍ତିତ ହୁଅ ନାହିଁ । ମୁଁ ଯକ୍ଷକୁ ପରାଜିତ କରି ସଙ୍ଗେ ସଙ୍ଗେ ଫେରିଆସିବି ।

ଏହାପରେ ସେ ରାଜକର୍ମଚାରୀଙ୍କ ପାଖକୁ ଆସି କହିଲେ, ମୋତେ ରାଜାଙ୍କ ନିକଟକୁ ନେଇ ଯାଆନ୍ତୁ । ମୋର ତାଙ୍କୁ କିଛି କହିବାର ଅଛି ।

ରାଜକର୍ମଚାରୀ ବୋଧିସତ୍ତ୍ୱଙ୍କୁ ରାଜାଙ୍କ ନିକଟକୁ ନେଇଗଲେ । ରାଜା ପ୍ରଶ୍ନ କଲେ, ତୁ କଣ ଯକ୍ଷ ପାଖକୁ ଅନ୍ନ ନେଇଯିବାକୁ ରାଜି ଅଛୁ ?

ହଁ ମହାରାଜ । ବୋଧିସତ୍ତ୍ୱ ଉତ୍ତର ଦେଲେ ।

ତୋର ଆତ୍ମରକ୍ଷା ପାଇଁ ତୁ କଣ କିଛି ଚାହୁଁ ? ରାଜା ପ୍ରଶ୍ନ କଲେ ।

ହଁ ମହାରାଜ, ଆପଣଙ୍କର ସୁନା-କଠାଉ, ଛତା ଏବଂ ତରବାରୀ ମୋର ଆବଶ୍ୟକ । ବୋଧିସତ୍ତ୍ୱ କହିଲେ ।

କିନ୍ତୁ ଏସବୁ ଜିନିଷ ନେଇ ତୋର ଲାଭ କଣ ?

ମହାରାଜ । ଯକ୍ଷ ତାହାକୁ ହିଁ ଭୋଜନ କରିବ, ଯିଏ ଖାଲି ପାଦରେ ମାଟିରେ ଛିଡ଼ାହୁଏ ଏବଂ ସେ ବାସ କରି ରହୁଥିବା ବଟବୃକ୍ଷ ତଳେ ଥାଏ । ସେଥିପାଇଁ ମୁଁ ଆପଣଙ୍କ ସୁନାର କଠାଉ ପିନ୍ଧି ଛତା ତଳେ ଛିଡ଼ା ହେବି । ବୋଧିସତ୍ତ୍ୱ ଉତ୍ତର ଦେଲେ ।

କିନ୍ତୁ ତରବାରୀ ନେଇ କରିବୁ କଣ ? ରାଜା ପ୍ରଶ୍ନ କଲେ ।

ଯାହା ହାତରେ ଶସ୍ତ୍ର ଅଛି, ତାକୁ କେବଳ ମଣିଷ ନୁହେଁ, ଅନ୍ୟମାନେ ମଧ୍ୟ ଭୟ କରିଥାଆନ୍ତି ।

ରାଜା ଏ ସମସ୍ତ ଶୁଣି ସାରିବା ପରେ ପ୍ରଶ୍ନ କଲେ, ଆଉ କଣ ଦରକାର କହ ।

ମହାରାଜ ! ମୋତେ ସୁନା ଥାଳୀରେ ଆପଣଙ୍କ ନିମନ୍ତେ ପ୍ରସ୍ତୁତ ହେଉଥିବା ଷଡ଼ରସର ସୁସ୍ୱାଦୁ ଭୋଜନ ସାମଗ୍ରୀ ଦେବେ । ବୋଧିସତ୍ତ୍ୱ କହିଲେ ।

କିନ୍ତୁ ଏ ସବୁ କାହିଁକି ? ରାଜା ପ୍ରଶ୍ନ କଲେ ।

ମହାରାଜ । ମୋ' ପରି ପଣ୍ଡିତ ମାଟି ଥାଳୀରେ କେବଳ ଭାତ ଧରି ଯିବା ଶୋଭନୀୟ ନୁହେଁ ।

ରାଜା ବୋଧିସତ୍ତ୍ୱଙ୍କ କଥା ଶୁଣି ପ୍ରସନ୍ନ ହେଲେ । ସେ ବୋଧି-ସତ୍ତ୍ୱଙ୍କ କହିବା ପ୍ରକାରେ ଭୋଜନ ବ୍ୟବସ୍ଥା କରି ଦେଲେ ଏବଂ ତାଙ୍କ ସଙ୍ଗରେ ନୌକର ଚାକର ଦେଇ ପଠାଇଲେ । କିଛିଦୂର ଅଗ୍ରସର

ହେବା ପରେ ବୋଧିସତ୍ତ୍ୱ ତାଙ୍କୁ ଅନୁସରଣ କରି ଚାଲିଥିବା ସେବକ-ମାନଙ୍କୁ ଅଟକି ଯିବାକୁ କହିଲେ । ତାପରେ ସେ ସୁନାର କଠାଉ ପିନ୍ଧି, ଛତା ଧରି, ଅଣ୍ଟାରେ ତରବାରୀ ବାନ୍ଧିଲେ ଏବଂ ସୁନା ଥାଳୀରେ ସୁସ୍ୱାଦୁ ଭୋଜନ ନେଇ ଯକ୍ଷ ପାଖରେ ପହଞ୍ଚିଲେ ।

ଯକ୍ଷ ତେଣେ ଅପେକ୍ଷା କରିଥିଲା । ସେ ଦେଖିଲା ସେ ଦିନ ଆସିଥିବା ଲୋକ ଜଣକର ଚାଲିଚଳଣ, ବେଶଭୂଷଣ ଆଗରୁ ଆସିଥିବା ସମସ୍ତ ଲୋକଙ୍କଠାରୁ ଭିନ୍ନ ଅଟେ ।

ବୋଧିସତ୍ତ୍ୱ ଗଛ ତଳେ ପହଞ୍ଚି ତରବାରୀ ସାହାଯ୍ୟରେ ଥାଳୀକୁ ନିଜ ଛତା ତଳକୁ ଭିଡ଼ି ଆଣିଲା ଏବଂ ଯକ୍ଷକୁ ଖାଇବାକୁ ଡାକିଲା ।

ଯକ୍ଷ ବୋଧିସତ୍ତ୍ୱଙ୍କର ସେହି ବିଚିତ୍ର ଢଙ୍ଗ ଦେଖି କହିଲା, ଏସବୁ ତମାସା ତୁ କରୁଛୁ କାହିଁକି ଯେ ? ଏ ଭୋଜନ ସାମଗ୍ରୀ ଓ ତୁ ନିଜେ ଏବେ ଅତିଶୀଘ୍ର ମୋର ଉଦରସ୍ଥ ହେବ ।

ବୋଧିସତ୍ତ୍ୱ ଭୟ ନ କରି କହିଲେ, ହେ ଯକ୍ଷ ! ମୋତେ ଖାଇଲେ ତୁ ନିଜର ହିଁ କ୍ଷତି କରିବୁ । କାରଣ କାଲିଠୁ ମରଣ ଭୟରେ କେହି ତୋ ପାଖକୁ ଷଡ଼ରସ ଭରା ଭୋଜନ ନେଇ ଆସିବେ ନାହିଁ । ବର୍ତ୍ତମାନ ତୁ ବିଚାର କର, ମୋତେ ଖାଇବା ଦ୍ୱାରା ତୋର ଲାଭ ହବ ନା କ୍ଷତି ହବ ।

ଯକ୍ଷ କିଛିକ୍ଷଣ ବିଚାର କରି କହିଲା, ତୁ ମୋର ମଙ୍ଗଳ ପାଇଁ ହିଁ କହୁଛୁ । ମୁଁ ତୋତେ ଛାଡ଼ି ଦେଉଛି ? ତୁ ସର୍ବକୁଶଳରେ ଛତ୍ର-ଚାମର ସହ ଘରକୁ ଫେରିଯା ଏବଂ ତୋ' ମାଆକୁ ସୁଖୀ କର ।

ବୋଧିସତ୍ତ୍ୱ ଭାବିଲେ, ଏତଦ୍ୱାରା ଅହିଂସାର ବିଜୟ ହେଲା । ମୁଁ ବର୍ତ୍ତମାନ ଯକ୍ଷକୁ ଜୟ କରିଛି । ଏତଦ୍ୱାରା ମାଆର ଦାରିଦ୍ର୍ୟ ବି ଦୂରୀଭୂତ ହେଲା । ରଜାଙ୍କର ମନୋରଥ ପୂର୍ଣ୍ଣ ହେଲା । ଅବଶିଷ୍ଟ ରହିଲା, ଏହି ଯକ୍ଷର ଉଦ୍ଧାରକରଣ । ତେଣୁ ସେ ଯକ୍ଷକୁ କହିଲେ, ହେ ଯକ୍ଷ ! ତୁ ହିଂସାରେ ଲିପ୍ତ ରହି ମନ୍ଦ ଆଚରଣ କରୁଛୁ । ବର୍ତ୍ତମାନ ହେଲେ ତୁ ସଦାଚାର ପାଳନ କର ଏବଂ ପଞ୍ଚଶୀଳର ମହତ୍ତ୍ୱ ଉପଲବ୍ଧି କର । ମୋ ସାଙ୍ଗରେ ନଗରୀକୁ ଚାଲ । ସେଇଠି ତୋ ପାଇଁ ଶ୍ରେଷ୍ଠ ଭୋଜନର ବ୍ୟବସ୍ଥା କରାଯିବ ।

ରଜା ଯେତେବେଳେ ସମ୍ବାଦ ପାଇଲେ ଯେ, ବୋଧିସତ୍ତ୍ୱ ଯକ୍ଷ ସଙ୍ଗରେ ଚାକର ବାକରଙ୍କ ସହିତ ଛତ୍ରଚାମର ହୋଇ ମହାଆଡ଼ମ୍ବର ସହକାରେ ଫେରି ଆସୁଛନ୍ତି, ସେ ରାଜ୍ୟର ସୈନ୍ୟମାନଙ୍କୁ ସଙ୍ଗରେ ନେଇ ତାଙ୍କୁ ସ୍ୱାଗତ ଜଣାଇବାକୁ ସ୍ୱୟଂ ଚାଲିଗଲେ । ନଗରବାସୀଙ୍କ ସମ୍ମୁଖରେ ସେ ବୋଧିସତ୍ତ୍ୱଙ୍କୁ ସମ୍ମାନିତ କଲେ ଓ ତାଙ୍କର ଗୁଣ ବର୍ଣ୍ଣନା କରିବାକୁ ଲାଗିଲେ । ସେଇଠି ସେ ବୋଧିସତ୍ତ୍ୱଙ୍କୁ ନିଜ ରାଜ୍ୟର ସେନାପତି ପଦରେ ଅଭିଷିକ୍ତ କଲେ ।

ଏହାପରେ ରଜା ବୋଧିସତ୍ତ୍ୱଙ୍କର ଉପଦେଶ ମାନି ଚଳିବାକୁ ଲାଗିଲେ । ଦାନପୁଣ୍ୟ ଓ ସତ୍କର୍ମ ଆଚରଣପୂର୍ବକ ରଜା ପରକାଳରେ ସ୍ୱର୍ଗଲାଭ କଲେ ।




ଥରେ ବୋଧିସତ୍ତ୍ୱ ମଗଧ ଦେଶର ସଚଳ ଗ୍ରାମରେ ଗୋଟିଏ ଉତ୍ତମ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ନାମ ରଖାଯାଇଥିଲା ମଘକୁମାର । କିନ୍ତୁ କାଳକ୍ରମେ ସେ ମଘ ମାଣବକ ନାମରେ ପରିଚିତ ହେଲେ । ଯେତେବେଳେ ସେ ବଡ଼ ହେଲେ, ତାଙ୍କ ପିତା ତାଙ୍କୁ ଗୋଟିଏ କୁଳୀନ ପରିବାରର କନ୍ୟା ସଙ୍ଗରେ ବିବାହ କରିଦେଲେ ।

ମଘ ମାଣବକ ଜଣେ ଅତ୍ୟନ୍ତ ସଜ୍ଜନ ଓ ସଦାଚାରୀ ଗୃହସ୍ଥ ଥିଲେ । ସେ ତାଙ୍କର ଉତ୍ତମ ସ୍ୱଭାବ ତଥା ପରୋପକାରୀ ହୃଦୟ ବଳରେ ଗ୍ରାମରେ ଖୁବ୍ ଲୋକପ୍ରିୟତା ହାସଲ କରିଥିଲେ ।

ସଚଳ ଗ୍ରାମରେ ମୋଟରେ ତିରିଶଟି ପରିବାର ଥିଲେ । ଗୋଟିଏ ପର୍ବ ଦିନରେ ଗ୍ରାମର ସମସ୍ତ ଲୋକ ଗୋଟିଏ ମୁଣ୍ଡିଆ ପାଖରେ ଏକାଠି ହେଲେ । ମୁଣ୍ଡିଆର ଭୂମି ଆବଡ଼ା ଖାବଡ଼ା ଥିଲା । ତେଣୁ ମାଣବକ ଛିଡ଼ା ହୋଇଥିବା ଆବଡ଼ା ଖାବଡ଼ା ଜମିକୁ ସଫା ସୁତରା କରି ଦୋରସ୍ତ କରିଦେଲେ । ମାଣବକ ଛିଡ଼ା ହୋଇଥିବା ଜାଗା ଖଣ୍ଡକ ସୁନ୍ଦର ଓ ସମତଳ ଦେଖି ଆଉ ଜଣେ ଲୋକ ଆସି ସେଇଠି ଛିଡ଼ା ହେଲା । ଏହା ଦେଖି ମାଣବକ ଆଉ ଏକ ଅପନ୍ତରା ଜମିକୁ ସଫା ସୁତରା କଲେ । କିନ୍ତୁ ସେ ଦେଖିଲେ, ଦ୍ୱିତୀୟ ସ୍ଥାନଟି ମଧ୍ୟ ଆଉ ଜଣେ ଲୋକ ଦଖଲ କରି ନେଇଛି । ତେଣୁ ସେ ଆଉ ଏକ ତୃତୀୟ ସ୍ଥାନ ସଫା ସୁତରା କଲେ । ଏମିତି ଭାବରେ ଧୀରେ ଧୀରେ ସମଗ୍ର ମୁଣ୍ଡିଆଟାକୁ କିଛିଦିନ ମଧ୍ୟରେ ମାଣବକ ସଫାସୁତରା ଓ ଲିପାପୋଛା କରି ସୁନ୍ଦର କରିଦେଲେ । ଗ୍ରାମ ଲୋକଙ୍କର ମଙ୍ଗଳ ଉଦ୍ଦେଶ୍ୟରେ ସେ ସେହି ସ୍ଥାନରେ ଗୋଟିଏ ଛାତ ପକାଇ ମଣ୍ଡପ ମଧ୍ୟ କରିଦେଲେ । ମଣ୍ଡପ ଭିତରେ ବସାଉଠା କରିବା ନିମନ୍ତେ ଅନ୍ୟାନ୍ୟ ଜିନିଷ ସଙ୍ଗରେ ଚଟି ପକାଇଦେଲେ ଓ ପିଇବା ପାଣିର ଯୋଗାଡ଼ କରିଦେଲେ ।

ମାଣବକଙ୍କର ଏହି ସେବା ମନୋଭାବ ଗ୍ରାମଲୋକଙ୍କ ଉପରେ ଅନେକ ପ୍ରଭାବ ପକାଇଲା । ବୋଧିସତ୍ତ୍ୱଙ୍କୁ ଅନୁକରଣ କରି ଗ୍ରାମର ତିରିଶଟିଯାକ ପରିବାର ପରୋପକାର ମନୋଭାବ ପୋଷଣ କଲେ । ବିଶ୍ରାମ ସମୟରେ ସମସ୍ତଙ୍କୁ ସଙ୍ଗରେ ନେଇ ବୋଧିସତ୍ତ୍ୱ ଗ୍ରାମର ପୋତି ହୋଇଥିବା କୂଅର ସଂସ୍କାର କାର୍ଯ୍ୟ କିମ୍ବା ପୋଖରୀ ହିଡ଼କୁ ପରିଷ୍କାର କରିବା, ଅପରିଷ୍କାର ଗାଡ଼ିଆ ପୋତି ସମତଳ କରିବା, ଭଙ୍ଗାରୁଜା ରାସ୍ତା ମରାମତି କରିବାରେ ଧ୍ୟାନ ଦେଲେ । କେବଳ ସେତିକି ନୁହେଁ ଧର୍ମଶାଳା, ପାଠଶାଳା ଇତ୍ୟାଦି ନିର୍ମାଣ କରିବାରେ ସେ ସମସ୍ତଙ୍କର ସହଯୋଗ ପାଇଲେ । ଏହିପରି ଭାବରେ ତାଙ୍କର ଗ୍ରାମ କାଳକ୍ରମେ ଆତ୍ମନିର୍ଭରଶୀଳ ହୋଇ ଉଠିଲା ଓ ଲୋକମାନେ ସଦାଚାରୀ ହେଲେ ।

ଏହା ଦେଖି ସେହି ଗ୍ରାମର ତତ୍ତ୍ୱାବଧାରକ (ଦାରୋଗା) ଭାବିଲା, ପ୍ରଥମେ ଏ ଗ୍ରାମର ଲୋକମାନେ ମଦ ଖାଉଥିଲେ ଓ ଚୋରୀ କରୁଥିଲେ । ସେତେବେଳେ ମୋର ଅନେକ ଆଦାୟ ଥିଲା । କିନ୍ତୁ ଯେଉଁଦିନଠାରୁ ମାଣବକ ଏହି ଲୋକମାନଙ୍କୁ ଭଦ୍ରତା ଓ ସଦାଚାର ଶିକ୍ଷା ଦେଲା, ସେହି ଦିନଠାରୁ ମୋର ସେହି ଉପୁରି ଆମଦାନି ଗଣ୍ଡାକ ନଷ୍ଟ ହୋଇଗଲା । ଯଦି କୌଣସି ଉପାୟରେ ମୁଁ ମାଣବକକୁ କୌଣସି ଦୋଷରେ ଅଂଶୀଦାର କରାଇ ଦେବି, ତାହାହେଲେ ଗାଁ ଲୋକଙ୍କ ବୁଦ୍ଧି ହଜିଯିବ । ମାଣବକକୁ ଲୋକ ଚକ୍ଷୁରେ ଗର୍ହିତ ସାବ୍ୟସ୍ତ କରିବା ବ୍ୟତୀତ ଏଥିରେ ଅନ୍ୟ ଉପାୟ କିଛି ନାହିଁ । ଏତଦ୍ୱାରା ମାଣବକର ଲୋକଙ୍କ ଉପରେ ପଡ଼ିଥିବା ସୁପ୍ରଭାବ ଆସ୍ତେ ଆସ୍ତେ ବଦଳିଯିବ ।

ଏହା ଭାବି ସେ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହିଲା, ମହାରାଜ ଗ୍ରାମରେ ଚୋର ଉପଦ୍ରବ ବଢ଼ିଛି ।

ରାଜା ଆଦେଶ ଦେଲେ, ଚୋରମାନଙ୍କୁ ଧରି ହାତୀ ପାଦରେ ମଡ଼ାଇ ଦିଅ ।

ଦାରୋଗା ରାଜାଙ୍କ ମୁହଁରୁ ନିଜର ବାଞ୍ଛିତ ଆଦେଶ ପାଇ ଗ୍ରାମରୁ ବୋଧିସତ୍ତ୍ୱ ଓ ତାʼର ସହଯୋଗୀମାନଙ୍କୁ ରାଜଦରବାରର ଚୌପାଢ଼ୀକୁ ନେଇ ଆସିଲା ଏବଂ ସେମାନଙ୍କୁ ଭୂଇଁତଳେ ଶୁଆଇ ଦେଇ ସେମାନଂକ ଉପରେ ହାତୀ ମଡ଼ାଇ ଦେବାର ବନ୍ଦୋବସ୍ତ କଲା ।

ବୋଧିସତ୍ତ୍ୱ ଏହା ଦେଖି ସହଚରମାନଙ୍କୁ ସମ୍ବୋଧନ କରି କହିଲେ, ଆପଣମାନେ ମନେ ରଖନ୍ତୁ, ଏହା ଆମପାଇଁ ଏକ ପରୀକ୍ଷା ସମୟ ଅଟେ । ଏଭଳି ସମୟରେ ଆପଣମାନେ କାହାରି ପ୍ରତି ଈର୍ଷା ପୋଷଣ କରନ୍ତୁ ନାହିଁ କିନ୍ତୁ ମନ ଭିତରେ ପ୍ରତିଶୋଧ କାମନା କରନ୍ତୁ ନାହିଁ । ଧର୍ମର ପାଳନ କର । କେହି ତୁମ୍ଭମାନଂକର କୌଣସି ଅନିଷ୍ଟ ଘଟାଇ ପାରିବେ ନାହିଁ ।

ସମସ୍ତେ ବୋଧିସତ୍ତ୍ୱଂକ କଥା ମାନିଲେ ।

ଯେତେବେଳେ ମାହୁନ୍ତ ହାତୀ ପିଠିରେ ବସି ଶୋଇଥିବା ଲୋକଂକ ଉପରେ କୁଦିଯିବା ପାଇଁ ହାତୀକୁ ଆଗେଇନେଲା, ସେତେ-ବେଳେ ଦେଖାଗଲା ହାତୀ ସେହି ଲୋକମାନଂକ ପାଖକୁ ନ ଯାଇ ଅନ୍ୟ ରାସ୍ତା ଧରି ଚାଲି ଯାଇଛି । ଏହା ପରେ ଦ୍ୱିତୀୟ ଓ ତୃତୀୟ ହାତୀ ଅଣାଗଲା । କିନ୍ତୁ ସମସ୍ତେ ସେହି ପ୍ରଥମ ହାତୀପରି ଶୋଇଥିବା ଲୋକଙ୍କର କୌଣସି ପ୍ରକାର ଅନିଷ୍ଟ ସାଧନ ନ କରି, ବାଟ କାଟି ଚାଲିଗଲେ ।

ଏହା ଦେଖି ଉପସ୍ଥିତ ଥିବା ଲୋକଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ।

ରାଜା ଭାବିଲେ, ଏଇ ଲୋକଙ୍କ ପାଖରେ ନିଶ୍ଚୟ କିଛି ଔଷଧ ଅଛି ଯାହାକୁ ଭୟକରି ହାତୀମାନେ ପାଖ ପଶୁ ନାହାନ୍ତି । ତେଣୁ ସେ ସିପାହୀମାନଙ୍କୁ ସେମାନଙ୍କ ତଲାସି ନେବାକୁ କହିଲେ । ତଲାସିରେ ଯେତେବେଳେ କିଛି ହେଲେ ମିଳିଲା ନାହିଁ, ରାଜା ଭାବିଲେ, ସେମାନେ ନିଶ୍ଚୟ କିଛି ମଂତ୍ର ଜାଣନ୍ତି । ତେଣୁକରି ସେମାନେ ହାତୀ ମୁହଁରୁ ରକ୍ଷା ପାଇଗଲେ । ତେଣୁ ରାଜା ଏହାର ଖବର ନେବା ପାଇଁ ଆଦେଶ ଦେଲେ ।

ରାଜକର୍ମଚାରୀମାନେ ଏହାର ସନ୍ଧାନ ନେବାପରେ ରାଜାଙ୍କ ସମ୍ମୁଖରେ ପ୍ରବେଶ ହେଲେ ଏବଂ କହିଲେ ମାଣବକ କହୁଛି ଯେ ସେ ଗୋଟିଏ ମନ୍ତ୍ର ଜପୁଛି । ସେହି ମନ୍ତ୍ର ବଳରେ ସେ ସମସ୍ତଙ୍କୁ ବଶ କରିପାରୁଛି ।

ରାଜା ବୋଧିସତ୍ତ୍ୱଙ୍କୁ ଡକାଇ ପଠାଇଲେ ଓ ଏ ସଂପର୍କରେ ପ୍ରଶ୍ନ କଲେ । ବୋଧିସତ୍ତ୍ୱ ଉତ୍ତର ଦେଲେ, ମହାରାଜ ! ଆମେ ସମସ୍ତେ ଅହିଂସାରେ ବିଶ୍ୱାସ କରୁ । ଆମେ ଚୋରି କରୁନା, ମିଛ କହୁନା ଓ ଭ୍ରଷ୍ଟାଚାରଠାରୁ ଦୂରେଇ ରହୁ । ପରୋପକାର ଫଳରେ ଯେଉଁ ଆନନ୍ଦ ମିଳେ ତାକୁ ଆକଣ୍ଠ ଉପଭୋଗ କରୁ । ଏହା ହିଁ ଆମର ମନ୍ତ୍ର ଓ ରକ୍ଷା–କବଚ ଅଟେ ।

ରାଜା ବୋଧିସତ୍ତ୍ୱଙ୍କର ଉତ୍ତର ଶୁଣି ପ୍ରସନ୍ନ ହେଲେ ଏବଂ ମିଥ୍ୟାବାଦୀ ଦାରୋଗାର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରି ନେଇ ବୋଧିସତ୍ତ୍ୱଙ୍କ ହସ୍ତରେ ସମର୍ପଣ କରିଦେଲେ । ସେହି ହାତୀ ଓ ଗ୍ରାମ ମଧ୍ୟ ବୋଧିସତ୍ତ୍ୱଙ୍କୁ ସମର୍ପଣ କରାଗଲା ।

---



ବହୁଦିନ ପୂର୍ବେ ବାରାଣସୀରେ ବ୍ରହ୍ମଦତ୍ତ ନାମକ ଜଣେ ରାଜା ରାଜୁତି କରୁଥିଲେ। ସେ ବଡ଼ ପ୍ରତାପୀ ରାଜା ଥିଲେ। ତରବାରିର ଲକ୍ଷଣ ସମ୍ପର୍କରେ ସୂଚନା ଦେବାକୁ ତାଙ୍କ ପାଖରେ ଜଣେ ବ୍ରାହ୍ମଣ ଥିଲେ। ଲୁହାରୀମାନେ (କମାର) ତରବାରି ତିଆରି କରି ରାଜାଙ୍କ ନିକଟକୁ ଆଣୁଥିଲେ । ରାଜା ସେମାନଙ୍କ ତରବାରି କ୍ରୟ କରିବା ପୂର୍ବରୁ ସେହି ବ୍ରାହ୍ମଣକୁ ପରୀକ୍ଷା କରିବାକୁ ଦେଉଥିଲେ। ବ୍ରାହ୍ମଣ ସେହି ତରବାରିକୁ ପରୀକ୍ଷା କରି ଭଲ ମନ୍ଦ କଥା ଜଣାଉଥିଲା ।

କିନ୍ତୁ ବ୍ରାହ୍ମଣ ଜଣକ ଖୁବ୍ ଲୋଭୀ ଥିଲା। ତରବାରିର ଲୁହା ଅସଲ ନା ମିଶା, ତରବାରିକୁ ଶୁଙ୍ଘି ସେ କଥା ସେ ପ୍ରକାଶ କରୁଥିଲା। ସେ କହୁଥିଲା, ମୁଁ ତରବାରିକୁ ଶୁଙ୍ଘି ତାହା ଭଲ ଅଛି କି ଖରାପ ଅଛି କହି ଦେଇପାରେଁ ।

କିନ୍ତୁ ତରବାରି ଶୁଙ୍ଘି ଭଲ ମନ୍ଦ କହିବା ତାର ଏକ ଠକାମୀ ଥିଲା। ଯେଉଁ ଲୋକ ତାକୁ ଉତ୍କୋଚ ଦେଉଥିଲା ଓ ତାର ହାତମୁଠାକୁ ଗରମ କରୁଥିଲା, ତାରି ତରବାରିକୁ ସେ ଖୁବ୍ ତାରିଫ୍ କରୁଥିଲା। କେବଳ ସେତିକି ନୁହେଁ, ତା ତରବାରି ଖୁବ୍ ଭଲ ଓ ମଙ୍ଗଳଦାୟକ ବୋଲି ମଧ୍ୟ ରାଜାଙ୍କ ଆଗରେ ସୁପାରିଶ୍ କରୁଥିଲା। ଫଳରେ ରାଜା ସେହ ତରବାରି ଖରିଦ କରୁଥିଲେ। ଆଉ ଯେଉଁ ଲୋକ ତାକୁ ଉତ୍କୋଚ ଦେଉ ନଥିଲା, ସେହି ବ୍ରାହ୍ମଣ ତାରି ତରବାରିର ନିନ୍ଦା କରୁଥିଲା ଏବଂ ରାଜାଙ୍କୁ ସେହି ତରବାରି ଖରାପ ବୋଲି କହି ଲୁହାରୀକୁ ଫେରାଇ ଦେଉଥିଲା।

ଦିନେ ଜଣେ ଗରିବ ଲୁହାରୀ ଗୋଟିଏ ତରବାରି ତିଆରି କରି ରାଜାଙ୍କ ପାଖକୁ ଆସିଲା। ତାର ତରବାରିଟି ଖୁବ୍ ସୁନ୍ଦର ଓ ମଜଭୁତ ଥିଲା। ତରବାରିଟି ନେଇ ସେ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେଲା। ରାଜା ବ୍ରାହ୍ମଣକୁ ତରବାରି ବିଷୟରେ ପ୍ରଶ୍ନ କଲେ। ବ୍ରାହ୍ମଣ

ତରବାରିକୁ ଥରେ ଶୁଙ୍ଘିନେଇ ମହାରାଜାଙ୍କୁ କହିଲା ନା ମହାରାଜ ! ଏହା ମୋଟେ ଭଲ ନୁହେଁ କି ମଙ୍ଗଳପ୍ରଦ ନୁହେଁ ।

ସେ ବା ସେହି ମଜଭୁତ୍ ତରବାରିକୁ ଭଲ ବୋଲି କେମିତି କହନ୍ତା ? ତାକୁ ଭଲ ବୋଲି କହିବା ପାଇଁ ତରବାରି ମାଲିକ ସେ ତାକୁ ଲାଞ୍ଚ ଦେଇ ନାହିଁ ! ବ୍ରାହ୍ମଣକୁ ଲାଞ୍ଚ ଦେବାପାଇଁ ଲୁହାରି ପାଖରେ ଅର୍ଥ କାହିଁ ? ପରିଣାମରେ ରାଜା ସେ ତରବାରିକୁ କିଣିଲେ ନାହିଁ । ଲୁହାରୀକୁ ଫେରି ଯିବାକୁ କହିଲେ ।

ଲୁହାରୀକୁ ଭାରି ଦୁଃଖ ହେଲା । ସେ ଭଲ ଜିନିଷକୁ ମନ୍ଦ ବୋଲି କହିଥିବା ବ୍ରାହ୍ମଣ ଉପରେ ପ୍ରତିଶୋଧ ନେବାକୁ ସଂକଳ୍ପ କଲା । ପୁଣି ଥରେ ସେ ରାଜାଙ୍କ ପାଖକୁ ତରବାରି ତିଆରି କରି ଆଣିଲା । କିନ୍ତୁ ଏଥର ସେ ତରବାରି ଦାଢରେ ଚୂର୍ଣ୍ଣ ଲଙ୍କାମରିଚ ଗୁଣ୍ଡ ବୋଳି ଆଣିଥିଲା । ରାଜା ପୂର୍ବପରି ସେହି ବ୍ରାହ୍ମଣକୁ ତରବାରିଟିକୁ ପରୀକ୍ଷା କରିବାକୁ କହିଲେ । ବ୍ରାହ୍ମଣ ତରବାରିଟିକୁ ଖୋଳ ଭିତରୁ ବାହାର କରି ନାକ ପାଖକୁ ଶୁଂଘିବାକୁ ଯେମିତି ନେଇଛି, ତାଙ୍କୁ ଭୀଷଣ ଛିଙ୍କ ମାଡିଲା । ତରବାରିଟି ନାକ ପାଖରେ ଅଛି ସେ ଛିଙ୍କ ସମ୍ଭାଳି ନ ପାରି ଛିଙ୍କି ପକାଇଲା । ଫଳରେ ତରବାରିର ଦାଢ ଲାଗି ତା' ନାକ ଦି'ଫାଳ ହୋଇଗଲା ।

ରାଜାଙ୍କ ପାଖରେ ଏମିତି କେତେଜଣ ସଭାସଦ ଥିଲେ, ଯେଉଁମାନେ କି ବ୍ରାହ୍ମଣକୁ ଦୁଷ୍ଟ ବୋଲି ଜାଣିଥିଲେ । ସେମାନେ ଏକଥା ଜାଣି ଖୁବ୍ ଖୁସି ହେଲେ । କହିଲେ, ଖୁବ୍ ଭଲ ହେଲା । ଯିଏ ଯେପରି କାମ କରିବ, ସେ ସେପରି ଫଳ ପାଇବ ।

ଏହିପରି ଭାବରେ ସେହି ଲୁହାରୀର ଚତୁରତା ଫଳରେ ଅନ୍ୟ ସମସ୍ତ ଲୁହାରୀମାନଙ୍କୁ ଲାଞ୍ଚ ଦେବାରୁ ମୁକ୍ତି ମିଳିଲା । ଦେଖୁ ପ୍ରକୃତ ଗୁଣ ଦେଖି ରାଜା ତରବାରି କିଣିଲେ । ଲାଞ୍ଚ ମିଛର ଆବଶ୍ୟକତା ରହିଲା ନାହିଁ ।

ଏଣେ ନାକକଟା ବ୍ରାହ୍ମଣର କଥା ଚାରିଆଡେ ବ୍ୟାପିଗଲା । ସେ ଯୁଆଡେ ଗଲେ ଲୋକେ ତାର କଟାନାକ ଦେଖି ହସୁଥିଲେ ।

ତାର ଅବସ୍ଥା ଦେଖି ରାଜାଙ୍କ ମନରେ ଦୟା ହେଲା । ସେ ବ୍ରାହ୍ମଣକୁ ଡକାଇ ବୈଦ୍ୟ ପାଖକୁ ପଠାଇଲେ ଓ ତାର କଟାନାକର ଚିକିତ୍ସା କଲେ । ତାପରେ ପୂର୍ବରୁ ତାର ଯେମିତି ନାକ ଥିଲା, ସେମିତି ଗୋଟିଏ ନାକ ଲାଖରେ ତିଆରି କରି ତା' ମୁହଁରେ ଖଞ୍ଜିଦେଲେ । ବ୍ରାହ୍ମଣ ଲାଖନାକ ଲଗାଇ ପୂର୍ବପରି ଦେଖାଗଲା । ଲୋକମାନେ କ୍ରମେ ଭୁଲି-ଗଲେ ଯେ, ସେହି ବ୍ରାହ୍ମଣର ନାକ କଟିଯାଇଛି । ତାପରେ ରାଜା ତା' ହାତରେ ଆଉ ଏକ ଦାୟିତ୍ୱ ଦେଇ ରାଜକର୍ମଚାରୀ ଭାବେ ରଖିନେଲେ ।

କାଳକ୍ରମେ ବ୍ରାହ୍ମଣ ଜାଣି ଖୁସି ହେଲା ଯେ, ଲୋକେ ତାର ପୂର୍ବର କାହାଣୀ ଭୁଲି ଯାଉଛନ୍ତି । ପୁଣି ନିଜର ସମ୍ମାନ ଫେରି ପାଇବା

ସକାଶେ, ସେ ମନଧ୍ୟାନ ଦେଇ ପରିଶ୍ରମ କରିବାକୁ ଲାଗିଲା । ପ୍ରତିଦିନ ସେ ରାଜା ଓ ରାଜ-କାର୍ଯ୍ୟରେ ଲାଗି ରହିଲା । ତାର ବେଳ ଅବେଳର ବିଚାର ବିବେଚନା ରହିଲା ନାହିଁ । ଏଥିରେ ସମସ୍ତେ ଢଇରାଣରେ ପଡିଗଲେ । ନୂଆ ଲୋକମାନେ ବ୍ରାହ୍ମଣର କାର୍ଯ୍ୟ ଦେଖି ତାଟକା ହେଲେ । ସମସ୍ତେ ପ୍ରାୟ ଭୁଲିଗଲେ ଯେ, ଏହି ସେହି ଲୋଭୀ ବ୍ରାହ୍ମଣ, ଯାହାର ନାକ ଦିନେ କଟି ଯାଇଥିଲା ।

ଦିନେ ସେ ଶତାଧିକ ଲୋକଙ୍କୁ ସଙ୍ଗରେ ନେଇ ରାଜସେବାରେ ନିମଗ୍ନ ଥିଲା । ସେତେବେଳେ ଟାଣ ଖରା ହୋଇ ସାରିଥାଏ । ତଥାପି ସେ ଲୋକଙ୍କ ଉପରେ ବିରକ୍ତ ହୋଇ ଆହୁରି କିଛି ଅଧିକ ପରିଶ୍ରମ କରିବାକୁ କହୁଥାଏ । ସେ ନିଜ ନାକ କଥା ସଂପୂର୍ଣ୍ଣ ରୂପେ ଭୁଲିଗଲା ।

ଏଣେ ଟାଣ ଖରା ହେଉଥାଏ । ତା' ସାଙ୍ଗକୁ ସେ ଲୋକଙ୍କ ଉପରେ ବକର ବକର ହେଉଥାଏ । ଦୁର୍ଭାଗ୍ୟକୁ ତା ନାକ ଯୋଡି ହେବା ସ୍ଥାନରୁ ଖସି ପଡିଲା ଓ ଲାଖତକ ତରଳି ଯାଇ ଅବଶେଷରେ ସମଗ୍ର ନାକଟି ତଳେ ପଡିଗଲା ।

ବ୍ରାହ୍ମଣ ଲଜ୍ଜାରେ ମୁଣ୍ଡ ତଳକୁ ପୋତି ଛିଡାହେଲା । ବର୍ତ୍ତମାନ ଲୋକଙ୍କ ଆଖି ଆଗରେ ବ୍ରାହ୍ମଣର ଅସଲ ରୂପ ଧରା ପଡିଗଲା ଓ ସେମାନେ ଭୁଲି ଯାଇଥିବା କଥା ପୁଣି ସ୍ମରଣ କଲେ ।

ସବୁଠୁ ସତକଥା ହେଲା, ଲୋଭୀ ଓ ଦୁଷ୍ଟଲୋକ ଆପଣା କଲା କର୍ମର ଫଳ ଅବଶ୍ୟ ଭୋଗ କରେ । ଯେତେ ଯାହା ହେଲେ ମଧ୍ୟ କଳଙ୍କ ଦାଗ ଲିଭେ ନାହିଁ ।

---




ବହୁଦିନ ପୂର୍ବେ ବାରଣସୀର ନଦୀ କୂଳରେ ଗୋଟିଏ ନୀଳ ବେଙ୍ଗ ବାସ କରୁଥିଲା । ବେଙ୍ଗଟି ସାଧୁ ସ୍ୱଭାବର ଥିଲା । ତେଣୁ ନଦୀରେ ବାସ କରୁଥିବା ସମସ୍ତ ଜୀବ ତାକୁ ଆଦର କରୁଥିଲେ ଓ ନିଜ ନିଜ ମଧ୍ୟରେ କୌଣସି କାରଣରୁ କଳିଗୋଳ ହେଲେ, ତାରି-ଦ୍ୱାରା ମୀମାଂସା କରଉଥିଲେ । ବେଙ୍ଗର ମୀମାଂସାରେ ସମସ୍ତେ ସୁଖୀ ଥିଲେ ।

ଦିନେ ନଦୀରେ ବାସ କରୁଥିବା ଗୋଟିଏ ସାପ କୁଆଡୁ ଆସି ସେମାନଙ୍କ ମେଳିରେ ଜୁଟିଗଲା । ସାପଟି ସେଇଠି ଥିବା ମାଛମାନଙ୍କୁ ଖାଇବାକୁ ଲାଗିଲା । ମାଛମାନେ ନଦୀରେ ବିକ୍ଷିପ୍ତ ହୋଇ ରହୁଥିଲେ । ସେଇଥିପାଇଁ ବହୁଦିନ ପର୍ଯ୍ୟନ୍ତ ସେମାନେ ଜାଣିପାରିଲେ ନାହିଁ ଯେ, ସେମାନଙ୍କ ମେଳିରେ ଆସି ରହିଥିବା ସାପଟି ସାଙ୍ଗ ମାଛମାନଙ୍କୁ ଗୋଟି ଗୋଟି କରି ଖାଇଯାଉଛି । ଯେତେବେଳେ ମାଛମାନଙ୍କ ସଂଖ୍ୟା ନିହାତି କମିଗଲା, ସେମାନେ ଏଥିର ସନ୍ଧାନ ନେଇ ସାପର ଗୁଣ ଜାଣି ପାରିଲେ । ତାପରେ ସେମାନେ ନିଜ ନିଜ ଭିତରେ ଚୁପ୍ ଚୁପ୍ କରି ଏକଥା କୁହାକୁହି ହେଲେ । ଏକଥା ଚାରିଆଡେ ହଇଚଇ ସୃଷ୍ଟି କଲା ।

ସେମାନେ ସମସ୍ତେ ମିଶି ସାପର ଏହି ଅତ୍ୟାଚାରର କଥା ନୀଳ-ବେଙ୍ଗ ଆଗରେ ଅଭିଯୋଗ କଲେ । ନୀଳବେଙ୍ଗ ସେମାନଙ୍କ କଥା ଶୁଣିଲା । ତାପରେ ସେମାନଙ୍କୁ ଧୈର୍ଯ୍ୟ ଦେଇ କହିଲା, ପ୍ରକୃତିର ନିୟମ ହେଲା ଯେ, ବଳବାନ୍ ଦୁର୍ବଳକୁ ଧ୍ୱଂସ କରିଦିଏ । ଧନୀ ଗରିବକୁ ଲୁଣ୍ଠନ କରେ ।

ମାଛମାନେ ଦୁଃଖ ମନରେ ଫେରିଗଲେ ।

ନୀଳବେଙ୍ଗ ସାପଟି ଯିବା ଆସିବାବେଳେ ପାଖକୁ ଡାକି ସବୁ-କଥା ବୁଝାଇବାକୁ ଚାହିଁଲା । କିନ୍ତୁ ସାପଟି ତା' କଥା ଶୁଣିବା ଦୂରେ ଥାଉ, ତାକୁ ମୁହଁ ଟେକି ବି ଚାହିଁଲା ନାହିଁ ।

କିଛିଦିନ ପରେ କେଉଟମାନେ ନଦୀକୁ ମାଛ ଧରିବାକୁ ଆସି, ଏଣେ ତେଣେ ଜାଲ ପକାଇଲେ । ଗୋଟିଏ ବଡ ଜାଲ ଭିତରେ ଅନେକ ମାଛ ପଶିଗଲେ । ସେମାନଙ୍କ ପଛେ ପଛେ ମାଛଖିଆ ସାପଟି ମଧ୍ୟ ଯାଇ ଜାଲ ଭିତରେ ଧରା ପଡ଼ିଲା । ଏହା ଦେଖି ଜାଲ ଭିତରେ ଥିବା ସବୁ ମାଛମାନେ ସାପକୁ ଏକ ସଙ୍ଗରେ ଆକ୍ରମଣ କଲେ ଓ ତାକୁ କ୍ଷତ ବିକ୍ଷତ କରି ପକାଇଲେ । ସାପର ଦେହସାରା କ୍ଷତ ହେଲା ଓ ସେ ବ୍ୟଥାରେ କମିବାକୁ ଲାଗିଲା । ତା'ପରେ ସେ କୌଣସି ପ୍ରକାରେ ଜାଲ ଭିତରୁ ଖସି ଆସିଲା ଓ ବ୍ୟଥା ସମ୍ଭାଳି ନ ପାରି ଅଜ୍ଞାନ ହୋଇ ନଈ କୂଳରେ ପଡ଼ିଗଲା ।

ନୀଳବେଙ୍ଗ ସାପକୁ ଦେଖି ଡେଇଁ ଡେଇଁ ତା' ପାଖକୁ ଆସିଲା । ସାପଟି ସେତେବେଳେ ମରିବା ଉପରେ । ସାପଟି ଅଣାୟତ୍ତ ଅବସ୍ଥାରେ ଥିଲା । ବେଙ୍ଗକୁ ଦେଖି କହିଲା, ବେଙ୍ଗ ମହାଶୟ ! ଆପଣ ପ୍ରକୃତରେ ସାଧୁ ଓ ଉତ୍ତମ ପ୍ରାଣୀ ଅଟନ୍ତି । ଆପଣହିଁ କହନ୍ତୁ, ମାଛ-ମାନେ ମୋ' ଉପରେ ଯେଉଁ ଅତ୍ୟାଚାର କଲେ, ତାହା କଣ ଭଲ କଥା ହେଲା ? ଦେଖନ୍ତୁ, ସେମାନେ ମୋର କି ଦଶା କଲେ ।

ଠିକ୍ ଏତିକିବେଳେ ମାଛମାନେ ଜାଲ ଭିତରୁ ମୁଣ୍ଡ ଗଳାଇ ସବୁ କିଛି ଶୁଣୁଥିଲେ ।

ବେଙ୍ଗ କହିଲା, ହଁ ବନ୍ଧୁ ! ମାଛମାନେ ଉଚିତ କାମ କରିଛନ୍ତି ବୋଲି ମୋର ବିଶ୍ୱାସ । ସେମାନଙ୍କ କାର୍ଯ୍ୟକୁ ମୁଁ ପ୍ରଶଂସା ନ କରି ରହି ପାରୁନାହିଁ । କାରଣ ତୋରି ଆୟତ୍ତରେ ପଡ଼ିବାମାତ୍ରେ ତୁ ସେମାନଙ୍କୁ ଛାଡ଼ୁ ନ ଥିଲୁ । ମାଛମାନେ ତୋତେ ସେମାନଙ୍କ ଆୟତ୍ତରେ ପାଇ ଛାଡ଼ି ଦେଇଥାନ୍ତେ କେମିତି ? ମନେରଖ, ଏଇ ପୃଥିବୀରେ କେହିହେଲେ ଦୁର୍ବଳ ନୁହନ୍ତି । ଦିନେ ନା ଦିନେ ସମସ୍ତଙ୍କର ପାଳି ପଡ଼େ । ଯିଏ ନିଜର ସାମର୍ଥ ବେଳେ ଲୁଣ୍ଠନ କରେ, ଶକ୍ତି ନ ଥିଲାବେଳେ ତାକୁ ମଧ୍ୟ ଲୋକେ ଲୁଣ୍ଠନ କରନ୍ତି । ପ୍ରତ୍ୟେକ ଲୁଣ୍ଠନକାରୀ ଦିନେ ନା ଦିନେ ଲୁଣ୍ଠିତ ହେବା ନିଶ୍ଚିତ ।

ମାଛମାନେ ନୀଳବେଙ୍ଗ ମୁହଁରୁ ଏହି ଉପସଂହାର ଶୁଣି ଜାଣିଲେ, ସାପଟି ବର୍ତ୍ତମାନ ଅତିଶୟ ଦୁର୍ବଳ ହୋଇ ଯାଇଛି । ବର୍ତ୍ତମାନ ସେମାନଙ୍କ ପାଳି ପଡ଼ିଛି । ଏତିକିବେଳେ ସେମାନେ ଜାଲରୁ ବାହାରି ଆସିଲେ ଓ ସାପକୁ ମାରି ପକାଇଲେ । ତା' ପରେ ସେମାନେ ନିଶ୍ଚିନ୍ତ ମନରେ ନଦୀରେ ଚଳପ୍ରଚଳ ହୋଇ ରହିଲେ ।

———




ପୂର୍ବ ଜନ୍ମରେ ବୋଧିସତ୍ତ୍ୱ ଥରେ ଜଣେ ଗରିବ ଲୁହାରୀ ଘରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାମାତା ଅତ୍ୟନ୍ତ ଦରିଦ୍ର ଥିଲେ । ସେମାନେ ଖୁବ୍ ପରିଶ୍ରମ ଓ ଯତ୍ନ ସହକାରେ ନିଜ ପୁତ୍ରକୁ ଲୁହାରୀ ବ୍ୟବସାୟ ଶିଖାଇଲେ । ପୁଅଟି ମଧ୍ୟ ସିଆଣିଆ ଥିଲା । ସେ ମଧ୍ୟ ମନ ଲଗାଇ ପରିଶ୍ରମ କଲା ଓ କୌଳିକ ବିଦ୍ୟା ଶିକ୍ଷା କରି କାଳକ୍ରମେ ଜଣେ ଚତୁର ଓ ପ୍ରସିଦ୍ଧ ଲୁହାରୀ ହେଲା ।

ସେମାନେ ରହୁଥିବା ଗ୍ରାମ ନିକଟରେ ଆଉ ଏକ ଗ୍ରାମ ଥିଲା । ସେଠାରେ ମଧ୍ୟ ଲୁହାରୀମାନେ ବାସ କରୁଥିଲେ । ସେହି ଲୁହାରୀ-ମାନଙ୍କ ମୁଖିଆ ଖୁବ୍ ଚତୁର ଓ ପ୍ରବୀଣ କାରିଗର ଥିଲା । ସେ ବହୁତ ନାମ କରିଥିଲା । ଏପରିକି ରାଜଦରବାରରେ ମଧ୍ୟ ସେ ସମ୍ମାନିତ ହେଉଥିଲା । ଗ୍ରାମର ମଧ୍ୟ ଭାଗରେ ସେହି ଲୁହାରୀର ଗୋଟିଏ ପକ୍କା ଘର ଥିଲା । ଲୁହାରୀର ଗୋଟିଏ ଅପରୂପ କନ୍ୟା ଥିଲା । ରୂପ, ଗୁଣ ଓ ସ୍ୱଭାବରେ ସେ ଅଦ୍ୱିତୀୟ ଥିଲା । ଆଖପାଖର ଲୋକମାନେ ଲୁହାରୀ ପାଖକୁ କୌଣସି କାର୍ଯ୍ୟରେ ଆସିଲେ, ସେହି ସୁନ୍ଦରୀ କନ୍ୟାକୁ ଦେଖି ପାରୁଥିଲେ । ଘରକୁ ଫେରି ସେମାନେ ସେହି ଦେଖିଆସିଥିବା କନ୍ୟାର ରୂପ, ଗୁଣ ଏବଂ ସ୍ୱଭାବ ସଂପର୍କରେ ପରସ୍ପର ମଧ୍ୟରେ ଆଲୋଚନା କରୁଥିଲେ । ଏହିପରି ଭାବରେ କନ୍ୟାର ପ୍ରଶଂସା ଚାରି-ଆଡେ ପ୍ରସାରିତ ହେଲା ।

ବୋଧିସତ୍ତ୍ୱ ମଧ୍ୟ ସେହି ସୁନ୍ଦରୀ ଲୁହାରୀ କନ୍ୟାର ପ୍ରଶଂସା ଶୁଣିଲେ । ସେ ମଧ୍ୟ ଜଣେ କାମିକା ଓ ଗୁଣିକ ନବଯୁବକ ଥିଲେ । ନିଜର ବାହୁବଳ ଓ ପୌରୁଷ ଉପରେ ତାଙ୍କର ପୂରା ବିଶ୍ୱାସ ଥିଲା । ତେଣୁ ସେ ମନେ ମନେ ଭାବିଲେ, ମୁଁ କୌଶଳକ୍ରମେ ଅବଶ୍ୟ ଏହି କନ୍ୟା ଲାଭ କରିବି ।

ଦିନେ ସେ ଅସଲ ଲୁହାରେ ଗୋଟିଏ ସରୁ ଛୁଞ୍ଚି ନିର୍ମାଣ କଲେ । ତାପରେ ସେ ସେହି ଛୁଞ୍ଚିର ଖୋଳ ତିଆରି କରି ତା' ଭିତରେ

ଛୁରୀକୁ ପୂରାଇ ରଖିଲେ । ଖୋଳ ଉପରେ ଆଉରି ପାଞ୍ଚୋଟି ଖୋଳ ଦେଲେ । ଏହି ଛୁରୀକୁ ନେଇ ସେ ପଡ଼ୋଶୀ ଗ୍ରାମ ଉଦ୍ଦେଶ୍ୟରେ ବାହାରିଲେ । ସେହି ଗ୍ରାମରେ ପହଞ୍ଚି ସେହି ମୁଖିଆ ଲୁହାରୀର ଘର ସାମନାରେ ମଧୁର କଣ୍ଠରେ ଗ୍ରାହକମାନଙ୍କୁ ଡାକିବା ଉଦ୍ଦେଶ୍ୟରେ କହିଲେ, ଏ ଗ୍ରାମରେ କିଏ ଅଛ ହୋ ! ମୋ ପାଖରେ ଚିକ୍କଣ, ସୁନ୍ଦର ଓ ପଥରରେ ଧାର ହୋଇଥିବା ଛୁରୀ ଅଛି । କିଏ କିଣିବ ଆସ ।

ସେ ସମୟରେ ମୁଖିଆର ସୁନ୍ଦରୀ କନ୍ୟା ପଙ୍ଖାରେ ପବନ ଖାଉଥିଲା । ବୋଧିସତ୍ତ୍ୱଙ୍କ କଣ୍ଠସ୍ୱର ଖୁବ ମିଠା ଲାଗିଲା । କିନ୍ତୁ ଏ କ'ଣ ? ତାରି ବାପର ଗାଁକୁ ବାହାର ଲୋକ ଆସି ଛୁରୀ ବିକିବାର ସାହସ ବା କଲାକେମିତି ? କଣ ସେ ଜାଣେ ନାହିଁ ଯେ ତା' ବାପା ଆଖପାଖ ଗାଁର ଶ୍ରେଷ୍ଠ କାରିଗର ବୋଲି ? ଯେତେଦୂର ପର୍ଯ୍ୟନ୍ତ ତା' ବାପାର ଜିନିଷ ପହୁଞ୍ଚିଛି, ଅନ୍ୟ ଲୁହାରୀମାନେ ସେମାନଙ୍କ ଜିନିଷ ଉତ୍କୃଷ୍ଟତର ବୋଲି କହିପାରୁ ନାହାନ୍ତି । ଏଇ ଅପରିଚିତ ଲୋକଟି କିଏ, କେଉଁଠୁ ନ ଜାଣି ନ ଶୁଣି ଚାଲି ଆସିଛି ସେ କଥା ଜାଣିବାକୁ ସେ ବ୍ୟଗ୍ରତା ପ୍ରକାଶ କଲା ।

କନ୍ୟାଟି ପଙ୍ଖା ଛାଡ଼ି ଘର ବାରଣ୍ଡାକୁ ଚାଲି ଆସିଲା ।

ବୋଧିସତ୍ତ୍ୱ କନ୍ୟା-ରତ୍ନକୁ ଦେଖି କୃତାର୍ଥ ହୋଇଗଲେ । ସେ ଭାବିଲେ ଭାଗ୍ୟ ଭଲ ଅଛି । ଯାହା ପାଇଁ ଏ ଗାଁକୁ ଆସିଥିଲି, ତା ସଙ୍ଗେ କଥାବାର୍ତ୍ତା କରିବା ପାଇଁ ସୁବର୍ଣ୍ଣ ସୁଯୋଗ ମିଳିଗଲା ।

କନ୍ୟାଟି ପାଖକୁ ଆସି କହିଲା, ହେ ଯୁବକ ! ତୁମେ କଣ ଜାଣ ନାହିଁ ଯେ, ଆଖପାଖର ସବୁ ଲୋକ ମୋ' ବାପାର ଛୁରୀ ଇତ୍ୟାଦି ଲୁହା ଜିନିଷ କିଣିବାକୁ ଆସୁଛନ୍ତି ? ଏଇ ଗାଁରେ ଛୁରୀ ବିକିବ ବୋଲି ଭୁଲରେ ବୋଧହୁଏ ଚାଲି ଆସିଛ । ଏ ଗାଆଁରେ ତୁମ ଜିନିଷ ପାଇଁ ଗରାଖ ମିଳିବା ବଡ଼ କଷ୍ଟ । ତୁମେ ବିପରୀତ ଆଚରଣ କଲ । କିନ୍ତୁ ମନେ ରଖ, ସାରା ଦିନଟା ନିଜ ଛୁରୀର ବାହାଦୁରୀ ଘୋଷି ହେଲେ ବି ଗୋଟିଏ ହେଲେ ଗରାଖ ମିଳିବେ ନାହିଁ ।

ବୋଧିସତ୍ତ୍ୱ ଏହା ଶୁଣି କହିଲେ, ହେ ଭଦ୍ରେ ! ଏଇଠି ଯେ ବିଶିଷ୍ଟ ଲୁହାରୀମାନେ ରହନ୍ତି, ସେ କଥା ଜାଣି ମଧ୍ୟ ଏଠାକୁ ଛୁରୀ ବିକିବାକୁ ଆସିଛି । କାରଣ, ଏଠାରେ ଯେ କୌଣସି କାରିଗର ମୋର ଛୁରୀର ବିଶେଷତ୍ୱ ଉପଲବ୍ଧି କରିପାରିବେ । ଯଦି ସୌଭାଗ୍ୟକ୍ରମେ ତୁମର ବାପା ଜାଣିବେ ଯେ ଏତେ ବଢ଼ିଆ ଛୁରୀ ମୁଁ ନିଜେ ତିଆରି କରିଛି, ତାହାହେଲେ ନିଃସନ୍ଦେହରେ ସେ ମୋତେ ତାଙ୍କର ଜ୍ୱାଇଁ କରିବେ ଓ ଯଥେଷ୍ଟ ଯୌତୁକ ଦେବେ ।

ସେହି ଗାଆଁର ମୁଖିଆ ଲୁହାରୀ କାନରେ ଏ କଥା ପଡ଼ିଲା । ସେ ନିଜ ଝିଅ ଉଦ୍ଦେଶ୍ୟରେ ପ୍ରଶ୍ନ କଲା, ଝିଅ, ତୁ କାହା ସାଙ୍ଗରେ କଥାବାର୍ତ୍ତା କରୁଛୁ ? ତାକୁ ମୋ' ପାଖକୁ ଡାକିବୁ କି ?

ବୋଧିସତ୍ତ୍ୱଙ୍କୁ ସଙ୍ଗରେ ନେଇ କନ୍ୟାଟି ନିଜ ବାପାଙ୍କ ପାଖକୁ ଆସିଲା । ମୁଖିଆଙ୍କୁ ପ୍ରଣାମ ଜଣାଇ ସେ ତାଙ୍କୁ ସମ୍ମାନ ଜଣାଇବା ସକାଶେ ଆଉ ପାଖକରେ ଛିଡ଼ା ହେଲେ । ତାଙ୍କର ପରିଚୟ ଜାଣିବାକୁ ଚାହିଁବାରୁ ସେ ନିଜ ଗ୍ରାମର ଓ ବାପାଙ୍କର ଠିକଣା କହି ଦେଲେ ।

ମୁଖିଆ ପଚାରିଲେ, କଣ ଏଇଠିକି ଛୁଞ୍ଚି ବିକ୍ରି କରିବାକୁ ଆସିଛ ? କାହିଁ, ତୁମ ଛୁଞ୍ଚି ଦେଖାଇଲ ।

ବୋଧିସତ୍ତ୍ୱ ସମସ୍ତଙ୍କ ସାମନାରେ ନିଜ ଗୁଣ ଗାରିମା ପ୍ରକଟ କରିବାକୁ ଚାହୁଁଥିଲେ । ତେଣୁ କହିଲେ, ଯଦି ମୋର ଛୁଞ୍ଚି ଦେଖିବାକୁ ଚାହୁଁଛନ୍ତି, ତାହା ହେଲେ ଗାଆଁର ଆଉ କେତେଜଣଙ୍କୁ ଏକାଠି କରନ୍ତୁ ।

ତଦନୁଯାୟୀ ଯେତେବେଳେ ବହୁଲୋକ ଆସି ମୁଖିଆ ଲୁହାରୀଙ୍କ ଘରେ ଏକାଠି ହେଲେ, ବୋଧିସତ୍ତ୍ୱ କହିଲେ, ହେ ମୁଖ୍ୟ ! ଦୟାକରି ଆଉ ଟିକିଏ ସାମାନ୍ୟ ପରିଶ୍ରମ ସ୍ୱୀକାର କରନ୍ତୁ ! ଗୋଟିଏ ଲୁହାପାତ୍ର ଏବଂ ଆଉ ଏକ ଜଳଭରା କଂସାଥାଳି ମଗାଇ ଆଣନ୍ତୁ ।

ସବୁଜିନିଷ ଅଣାଯିବା ପରେ ବୋଧିସତ୍ତ୍ୱ ଖୋଳଯୁକ୍ତ ଛୁଞ୍ଚିଟିକୁ ମୁଖିଆଙ୍କ ହାତକୁ ବଢ଼ାଇ ଦେଲେ ।

ମୁଖିଆ ତାକୁ ଓଲଟ ପାଲଟ କରି ଦେଖି ପ୍ରଶ୍ନ କଲେ, ଏହା କଣ ଛୁଞ୍ଚି ?

ବୋଧି ସତ୍ତ୍ୱ ଉତ୍ତର ଦେଲେ, ନାଁ ମହାଶୟ, ତାହା ଛୁଞ୍ଚି ନୁହେଁ, ଛୁଞ୍ଚିର ଖୋଳ !

କିନ୍ତୁ ମୁଖିଆଙ୍କୁ ଯେତେବେଳେ ଛୁଞ୍ଚିର ଠିକଣା ମିଳିଲା ନାହିଁ, ବୋଧିସତ୍ତ୍ୱ ସେହି ନଳଯୁକ୍ତ ଛୁଞ୍ଚିକୁ ଆପଣା ହାତକୁ ନେଇ ଆସିଲେ ଓ ତା' ଦେହରୁ ପ୍ରଥମ ଖୋଳଟି ବାହାର କରି ତଳକୁ ଫୋପାଡ଼ି ଦେଲେ । ତାପରେ ସେ ଅନ୍ୟ ଅଂଶତକ ପୁନର୍ବାର ମୁଖିଆଙ୍କ ହାତକୁ ବଢ଼ାଇ ଦେଲେ ।

ମୁଖିଆ ପୁଣି ସେଇ ଅବଶିଷ୍ଟ ଅଂଶର କିଛି ଠିକ୍ ଠିକଣା ନ ପାଇ ପ୍ରଶ୍ନ କଲେ, ଏଇଟା କଣ ଛୁଞ୍ଚି ? କିନ୍ତୁ ଇଏତ ଛୁଞ୍ଚି ପରି ଦେଖାଯାଉ ନାହିଁ ।

ବୋଧିସତ୍ତ୍ୱ ଉତ୍ତର ଦେଲେ, ନା ମହାଶୟ । ଯାହା ବର୍ତ୍ତମାନ ଆପଣ ଦେଖୁଛନ୍ତି ସେ ମଧ୍ୟ ଛୁଞ୍ଚି ନୁହେଁ । ସିଏ ଛୁଞ୍ଚିର ଖୋଳମାତ୍ର । ଏହାପରେ ବୋଧିସତ୍ତ୍ୱ ନିଜ ନଖରେ ଆଉ ଏକ ଖୋଳ ବାହାର କରି ଦେଖାଇ ଦେଲେ । ତଥାପି ମୁଖିଆ ଜଣକ ଛୁଞ୍ଚିର ପତ୍ତା ପାଇଲେ

ନାହିଁ । ବୋଧିସତ୍ତ୍ୱ ଏହାପରେ ତୃତୀୟ ଖୋଳକୁ ବାହାର କରିଦେଲେ । ଏହିପରି ଭାବରେ ଯେତେବେଳେ ସେ ଷଷ୍ଠ ଖୋଳଟି ବାହାର କଲେ, ଶେଷରେ ସେହି ସୁନ୍ଦର, ତୀକ୍ଷ୍ଣ ତଥା ସୂକ୍ଷ୍ମ ଛୁଞ୍ଚିଟି ବାହାରିଲା ।

ସେହି ଛୁଞ୍ଚିଟିକୁ ଦେଖିବା ପରେ ସମସ୍ତେ ବୋଧିସତ୍ତ୍ୱଙ୍କ ପ୍ରଶଂସା କଲେ ଓ ବାହା ବାହା କଲେ ।

ଏହାପରେ ମୁଖିଆ ପ୍ରଶ୍ନ କଲେ, ଏଇ ଛୁଞ୍ଚିଟା ଯେ ଶକ୍ତ ଅଛି, ତାର ପ୍ରମାଣ କଣ ?

ବୋଧିସତ୍ତ୍ୱ ଉତ୍ତର ଦେଲେ, ଆପଣ ଯେ କୌଣସି ଲୋକର ମୁଣ୍ଡ ଉପରେ ପାଣିଭରା ଥାଳି ରଖନ୍ତୁ । ତା' ଉପରେ ଘଡାଟି ଥୋଇ ଦିଅନ୍ତୁ, ଏବଂ ଛୁଞ୍ଚିରେ ସେହି ଘଡାକୁ ବିନ୍ଧି ପକାନ୍ତୁ ।

ଠିକ୍ ସେହିପରି କରାଗଲା । ଛୁଞ୍ଚିଟି ଘଡାକୁ ଫୋଡି ପକାଇ ତଳେଥିବା ପାଣି ଥାଳ ଉପରେ ଠିଆ ହେଲା । ଏହିପରି ଏକ ଆଶ୍ଚର୍ଯ୍ୟ କାର୍ଯ୍ୟ ଦେଖି ସମବେତ ଲହୁହାରୀମାନେ ଛାଏଁ ଛାଏଁ ପ୍ରକାଶ କଲେ ଏଭଳି କଥା ତ ଆମେ କେବେ ଦେଖି ନ ଥିଲୁ । ଇଏତ ଏକ ସାଂଘାତିକ କାରିଗର ମନେ ହେଉଛି ।

ସେହି ମୁଖିଆ ଲୁହାରୀ ପ୍ରସନ୍ନ ହୋଇ ନିଜ କନ୍ୟାକୁ ଡକାଇଲେ, ଏବଂ ସର୍ବ ସମକ୍ଷରେ ନିଜ କନ୍ୟାର ହାତ ଆଣି ବୋଧିସତ୍ତ୍ୱଙ୍କ ହାତକୁ ବଢାଇ ଦେଲେ ।

ଗାଁର ସମସ୍ତେ କିଛିଦିନ ପାଇଁ ଉତ୍ସବର ବ୍ୟବସ୍ଥା କଲେ ।

ଖୁବ୍ ଜାକ୍‌ଜମକରେ ଶୋଭାଯାତ୍ରା ବାହାରିଲା ।

ବୋଧିସତ୍ତ୍ୱ ବହୁଦିନ ପର୍ଯ୍ୟନ୍ତ ନିଜ ପରିଶ୍ରମରେ ଉପାର୍ଜନ କରି ଚଳପ୍ରଚଳ ହେଲେ । ସେ ବହୁ ଯଶ, ସମ୍ମାନ ଓ ସମ୍ପତ୍ତିର ଅଧିକାରୀ ହେଲେ । ନିଜ ଶ୍ୱଶୁରଙ୍କ ଦେହାନ୍ତ ପରେ ସେ ଉକ୍ତ ଗ୍ରାମର ମୁଖିଆ ହେଲେ ।

---



# ମିତ୍ରଦ୍ରୋହୀ

ଥରେ ମଗଧ ଦେଶରେ ଜଣେ ରାଜା ରାଜୁତି କରୁଥିଲେ । ରାଜଗୃହ ତାଙ୍କର ରାଜଧାନୀ ଥିଲା । ସେ ସମୟରେ ବୋଧିସତ୍ତ୍ୱ ଜଣେ ଶ୍ରେଷ୍ଠୀ ଘରେ ଜନ୍ମଗ୍ରହଣ କରିଥିଲେ । ବଡ ହେବାରୁ ସେ ବାପାଙ୍କର ବ୍ୟବସାୟ ସମ୍ଭାଳିଲେ ଓ ଶଙ୍ଖ ଶ୍ରେଷ୍ଠୀ ନାମରେ ଖ୍ୟାତ ହେଲେ । ତାଙ୍କ ପାଖରେ ଅଶୀ କୋଟି ସ୍ୱର୍ଣ୍ଣମୁଦ୍ରା ଥିଲା । ସେ ସମୟରେ ବାରାଣସୀରେ ମଧ୍ୟ କୋଟିପତି ବାସ କରୁଥିଲେ । ତାଙ୍କ ନାମ ଥିଲା ପଲ୍ଲବ ଶ୍ରେଷ୍ଠୀ । ଉଭୟେ ପରସ୍ପରକୁ ବହୁତ ସ୍ନେହ କରୁଥିଲେ ।

ଥରେ ପଲ୍ଲବ ଶ୍ରେଷ୍ଠୀର ଦୁରବସ୍ଥା ଉପସ୍ଥିତ ହେଲା । ତାର ସମଗ୍ର ବ୍ୟବସାୟ ନଷ୍ଟ ହୋଇଗଲା । ତେଣୁ ତାର ଅଭାବ ଦେଖାଦେଲା । ଋଣ ହେତୁ ତାର ଘର, ଜମି ଇତ୍ୟାଦି ସ୍ଥାବର ଅସ୍ଥାବର ସମ୍ପତ୍ତି ବିକ୍ରି ହୋଇଗଲା ଏବଂ ସେ ଦରିଦ୍ର ହୋଇଗଲା । ଆଶ୍ରୟହୀନ ହେବାରୁ ସେ ନିଜ ସ୍ତ୍ରୀକୁ ସଙ୍ଗରେ ନେଇ ରାଜଗୃହରେ ବାସ କରୁଥିବା ବନ୍ଧୁ ଶଙ୍ଖ ଶ୍ରେଷ୍ଠୀ ପାଖରେ ପହଞ୍ଚିଲା ।

ନିଜ ଦୂର ବନ୍ଧୁର ଏ ଅବସ୍ଥା ଦେଖି ଶଙ୍ଖ ଶ୍ରେଷ୍ଠୀଙ୍କର ମନରେ ଖୁବ୍ ଦୁଃଖ ହେଲା । ସେ ଆଗେଇ ଆସି ନିଜ ବନ୍ଧୁଙ୍କୁ ସ୍ୱାଗତ କଲେ । ତାପରେ ତାକୁ ଛାତିରେ ଲଗାଇ ନିଜର ସହାନୁଭୂତି ପ୍ରକାଶ କଲେ ଓ ନିଜ ଘର ଭିତରକୁ ନେଇ ଅସୁବିଧା କଥା ବୁଝି ତାଙ୍କର ସୁଖ ସୁବିଧା ସକାଶେ ସମସ୍ତ ବନ୍ଦୋବସ୍ତ କରିଦେଲେ ।

ଦିନେ ସୁବିଧା ଦେଖି ତାଙ୍କର ସବିଶେଷ ବିବରଣୀ ସଂଗ୍ରହ କରିବା ଉଦ୍ଦେଶ୍ୟରେ ଶଙ୍ଖ ଶ୍ରେଷ୍ଠୀ ନିଜ ବନ୍ଧୁଙ୍କ ନିକଟରେ ପହଞ୍ଚି ପ୍ରଶ୍ନ କଲେ, ଆଛା ବନ୍ଧୁ, ବାରଣସୀ ତ୍ୟାଗ କଲ କାହିଁକି ?

ପଲ୍ଲବ ଶ୍ରେଷ୍ଠୀ ବନ୍ଧୁ ଆଗରେ ବାରାଣସୀ ତ୍ୟାଗ କରିବାର କାରଣ କହିବାକୁ ଯାଇ ସଙ୍କୋଚ କଲା, କଣ ଆଉ ସେ କଥା କହିବି ?

ମୁଁ ଦୁଷ୍ଟଗ୍ରହ କବଳରେ ପଡ଼ିଯାଇଛି । ମୋର ସମଗ୍ର ବ୍ୟବସାୟ ଉଜୁଡ଼ି ଗଲା । ପାଖରେ ଫୁଟା କଉଡ଼ିଟିଏ ବି ରହିଲା ନାହିଁ । ବନ୍ଧୁ ଓ ଧୈର୍ଯ୍ୟ, ଏ ଦୁଇଟି ଜିନିଷକୁ ବିପତ୍ତିବେଳେ ପରୀକ୍ଷା କରଯାଇଥାଏ । ତୁମେ ମୋର ବନ୍ଧୁ ଅଟ । ତୁମେ ମୋତେ ସାହାଯ୍ୟ କରିବ, ଏହି ବିଶ୍ୱାସ ନେଇ ତୁମ ପାଖକୁ ଆସିଛି ।

ଶଙ୍ଖ ଶ୍ରେଷ୍ଠୀ କହିଲେ, ତୁମେ ଚିନ୍ତା କର ନାହିଁ । ମୋର ଯେଉଁ ସମ୍ପତ୍ତି ଅଛି, ତାହା ତୁମର ବୋଲି ଧରିନିଅ । ଏହା କହି ସେ ନିଜ ସଂପତ୍ତିରୁ ଚାଳିଶ କୋଟି ସୁବର୍ଣ୍ଣ ମୁଦ୍ରା ନିଜ ବନ୍ଧୁ ହସ୍ତରେ ଅର୍ପଣ କଲେ । କେବଳ ସେତିକି ନୁହେଁ, ନିଜ ଅଙ୍ଗଭୂଷଣ ଓ ପୋଷାକରୁ ଅର୍ଦ୍ଧେକ ବନ୍ଧୁ ହାତରେ ଅର୍ପଣ କଲେ । ଏହିସବୁ ଧନ ଓ ମୂଲ୍ୟବାନ ଜିନିଷ ନେଇ ପଲ୍ଲବ ଶ୍ରେଷ୍ଠୀ ବାରାଣସୀକୁ ଫେରିଗଲେ ।

ତାର କିଛି ଦିନ ପରେ ଶଙ୍ଖ ଶ୍ରେଷ୍ଠୀଙ୍କର ମଧ୍ୟ ଦୁରବସ୍ଥା ସମୟ ଉପସ୍ଥିତ ହେଲା । ତାଙ୍କର ସବୁକିଛି ହରାଇ ଦେବାପରେ, ସେ ନିଜ ବନ୍ଧୁଙ୍କ କଥା ସ୍ମରଣ କଲେ । ଭାବିଲେ, ତାଙ୍କର ଦୁଃସମୟରେ ମୁଁ ଅର୍ଦ୍ଧେକ ସମ୍ପତ୍ତି ଦାନ କରି ତାଙ୍କୁ ସାହାଯ୍ୟ କରିଥିଲି । ସେ ସମ୍ଭବତଃ ମୋର ସେହି ସାହାଯ୍ୟ ସହଯୋଗ କଥା ଭୁଲି ନ ଥିବେ । ତେଣୁ ମୋର ଏ ଦୁଃସମୟ ବେଳେ ତାଙ୍କ ପାଖକୁ ଯିବା ଭଲ ହେବ । ସେ ତାଙ୍କର ସ୍ତ୍ରୀଙ୍କୁ ସଙ୍ଗରେ ନେଇ ଚାଲି ଚାଲି ଯାଇ ବାରାଣସୀରେ ପହଞ୍ଚିଲେ । ରାତିରେ କୌଣସି ଧର୍ମଶାଳାରେ କଟାଇ ଦେଇ ସକାଳେ ନିଜ ସ୍ତ୍ରୀଙ୍କୁ କହିଲେ, ବାରାଣସୀ ଆମର ଧନିକ ବନ୍ଧୁଙ୍କର ବାସସ୍ଥାନ ଅଟେ । ତୁମେ ମୋ' ସଙ୍ଗରେ ରାସ୍ତାତମାମ ଚାଲି ଚାଲି ବୁଲିବ, ଏ କଥା ମୋତେ ଭଲ ଲାଗୁ ନାହିଁ । ମୁଁ ବନ୍ଧୁଙ୍କ ନିକଟକୁ ଯାଉଛି । ତାଙ୍କୁ କହି ତୁମର ଯିବାପାଇଁ ରଥ ପଠାଇ ଦେବି । ରଥ ଉପରେ ବସି ତୁମେ ସମ୍ମାନରସହ ଯିବ । କିଛି ସମୟ ପାଇଁ ଏଇଠି ଅପେକ୍ଷା କର ।

ନିଜ ପତ୍ନୀଙ୍କୁ ବୁଝାଇ ଶୁଝାଇ ଶଙ୍ଖ ଶ୍ରେଷ୍ଠୀ ନିଜ ବନ୍ଧୁଙ୍କ ପାଖରେ ଯାଇ ପହୁଞ୍ଚିଗଲେ । ସେଠାକୁ ଯାଇ ଦ୍ୱାରପାଳକୁ କହିଲେ, ଶ୍ରେଷ୍ଠୀଙ୍କୁ ଯାଇ ଖବର ଦିଅ ଯେ, ରାଜଗୃହରୁ ତାଙ୍କର ବନ୍ଧୁ ଶଙ୍ଖ ଶ୍ରେଷ୍ଠୀ ସାକ୍ଷାତ କରିବାକୁ ଆସିଛନ୍ତି ।

ସମ୍ବାଦ ଶୁଣି ଶଙ୍ଖ ଶ୍ରେଷ୍ଠୀଙ୍କର ବନ୍ଧୁ, ପ୍ରହରୀକୁ ତାଙ୍କୁ ଡାକି ଆଣିବାକୁ କହିଲେ । କିନ୍ତୁ ଶଙ୍ଖ ଶ୍ରେଷ୍ଠୀ ଯେତେବେଳେ ତାଙ୍କ ପାଖରେ ପହଞ୍ଚିଲେ, ପଲ୍ଲବ ଶ୍ରେଷ୍ଠୀ ବନ୍ଧୁଙ୍କର ଦୁରବସ୍ଥା ଦେଖି ତାଙ୍କୁ ସ୍ୱାଗତ କରିବାକୁ ଆସନ ପରିତ୍ୟାଗ କରିବା ଦୂରେ ଥାଉ, କୌଣସି ସ୍ନେହ ବା ଆନନ୍ଦ ପ୍ରଦର୍ଶନ ସୁଦ୍ଧା କଲେ ନାହିଁ । କେବଳ ଏତିକି କହିଲେ, କୁହ ଭାଇ ! କୁଆଡେ ଆସିଲ ?

ତୁମକୁ ଦେଖିବା ପାଇଁ ? ଶଙ୍ଖ ଶ୍ରେଷ୍ଠୀ ଉତ୍ତର ଦେଲେ ।

କେଉଁଠି ରହୁଛ ?

କୁଆଡେ ରହି ନାହିଁ । ସ୍ୱାଙ୍କୁ ଧର୍ମଶାଳାରେ ରଖି ତୁମ ନିକଟକୁ ଏଇ ସଙ୍ଗେ ସଙ୍ଗେ ଚାଲିଆସିଛି । ଶଂଖ ଶ୍ରେଷ୍ଠୀ କହିଲେ ।

ପଲ୍ଲବ ଶ୍ରେଷ୍ଠୀ ଶାଣିତ ଚାହାଣୀରେ ନିଜ ବନ୍ଧୁକୁ ଚାହିଁଲା ଏବଂ କହିଲା, ବର୍ତ୍ତମାନ ତୁମ ସଙ୍ଗେ କଥାବାର୍ତ୍ତା ହେବାକୁ ମୋର ସମୟ ନାହିଁ । ତୁମେ ସେହି ଧର୍ମଶାଳାରେ ଯାଇ ରନ୍ଧାବଢ଼ା ଓ ଖିଆପିଆ କରି ଚାଲିଯାଇପାର ।

ତା ପରେ ସେ ପାଖରେ ଥିବା ଭଣ୍ଡାରୀକୁ ଡାକି ଆସ୍ତେ ଆସ୍ତେ କହିଲା, ଥଳିଏ ଖୁଦ ଦେଇ ସ୍ୱାଁକୁ ବିଦା କରିଦେ ।

ସେହିଦିନ ଶ୍ରେଷ୍ଠୀ କିନ୍ତୁ ଚାଳିଶ ଭରଣ ବାସନା ଚାଉଳ ରଖିଥିଲା । କିନ୍ତୁ ସେହି କୃତଘ୍ନ ଓ ନୀଚମନା ବନ୍ଧୁ କେବଳ ଥଳିଟିଏ ଖୁଦଦେଇ ସେହି ବନ୍ଧୁଙ୍କୁ ନିଜ ଦୁଆରୁ ଫେରାଇ ଦେଲା । ଅଥଚ ତାର ଚରମ ଦୁର୍ଗତିବେଳେ ଏହି ବନ୍ଧୁ ନିକଟରୁ ଚାଳିଶ କୋଟି ସ୍ୱର୍ଣ୍ଣମୁଦ୍ରା ସାହାଯ୍ୟ ଆଣିଥିଲା ।

ଯେତେବେଳେ ଭଣ୍ଡାରୀଟି ବୋଧିସତ୍ତ୍ୱଙ୍କ ନିକଟକୁ ଖୁଦ ନେଇ ଆସିଲା, ବୋଧିସତ୍ତ୍ୱ (ଶଙ୍ଖଶ୍ରେଷ୍ଠୀ) ଭାବିବାକୁ ଲାଗିଲେ, ଯେଉଁ ସମୟରେ ପଲ୍ଲବ ଶ୍ରେଷ୍ଠୀ ଉପରେ ବିପତ୍ତି ପଡ଼ିଥିଲା ମୁଁ ମୋର ଗଣ୍ଡାଘରୁ ଅଜସ୍ର ଧନସମ୍ପଦ ତାକୁ ଅର୍ପଣ କରିଥିଲି ; କିନ୍ତୁ ସେହି ମିତ୍ରଦ୍ରୋହୀ ଆଜି ସେହି ଦାନ କଥା ସମ୍ପୂର୍ଣ୍ଣରୂପେ ଭୁଲି ଯାଇ, ମୋତେ କେବଳ ଖୁଦ ଦେବାକୁ ଚାହୁଁଛି । ସେ ବର୍ତ୍ତମାନ ବନ୍ଧୁ ସମ୍ପର୍କ ଭାଙ୍ଗି ଦେଇଛି । ଯଦି ମୁଁ ଏ ଖୁଦ ଗ୍ରହଣ କରିବି ନାହିଁ, ତାହାହେଲେ ମୁଁ ମଧ୍ୟ ମିତ୍ର–ଧର୍ମ ଭଙ୍ଗ କରିବି । ତେଣୁ ମୁଁ ଖୁଦନେଇ ମିତ୍ରଭାବ ବଜାୟ ରଖିବି ।

ଏପରି ନିଷ୍ପତ୍ତି କରି ବୋଧିସତ୍ତ୍ୱ ସେହି ଖୁଦକୁ ନିଜ ଗାମୁଛାରେ ବାନ୍ଧିରଖିଲେ ଓ ସେହି କୃତଘ୍ନ ବନ୍ଧୁଗୃହରୁ ବିଦାୟ ନେଲେ । ଯେତେବେଳେ ସେ ଧର୍ମଶାଳାକୁ ଫେରି ଆସିଲେ, ନିଜପତ୍ନୀ ଉତ୍ସୁକତା ସହକାରେ ପ୍ରଶ୍ନ କଲେ, କଣ ଆପଣଙ୍କ ବନ୍ଧୁ ରଥଦେଇ ଆପଣଙ୍କୁ ପଠାଇଛନ୍ତି ? ସେ ଆପଣଙ୍କୁ କିପରି ଭାବରେ ଆଦର ଅଭ୍ୟର୍ଥନା କଲେ ? ଗାମୁଛାରେ କଣ ମଣିମୁକ୍ତା ବାନ୍ଧି ଦେଇଛନ୍ତି ?

ବୋଧିସତ୍ତ୍ୱ କହିଲେ, ବନ୍ଧୁ ଏତକ ଖୁଦଦେଇ ମୋତେ ବିଦା କରିଦେଲେ ।

ଆରେ, ଏ କି କଥା ? ଚାଳିଶ କୋଟି ସୁବର୍ଣ୍ଣ ମୁଦ୍ରା ବିନିମୟରେ ଏତକ ଖୁଦ ଦେବାକୁ ତାଙ୍କୁ କଣ ଲାଜ ମାଡ଼ିଲା ନାହିଁ ? ଆପଣ ସେ ଖୁଦ ବା ଆଣିଲେ କାହିଁକି ? ଖୁଦକୁ ତା' ମୁହଁ ଉପରକୁ ଫୋପାଡ଼ିଦେଇ ଆସିଲେ ନାହିଁ ? ଏହା କହି ବୋଧିସତ୍ତ୍ୱଙ୍କ ପତ୍ନୀ ଆଖିରୁ ଲୁହ ପୋଛିଲେ ।

ବୋଧିସତ୍ତ୍ୱ ତାଙ୍କ ପତ୍ନୀଙ୍କୁ ସାନ୍ତ୍ୱନା ଦେଇ କହିଲେ, ମୁଁ ପରମ୍ପରା ଅନୁଯାୟୀ କାର୍ଯ୍ୟ କରିଛି । ମିତ୍ର ସଙ୍ଗେ ମିତ୍ରତା ବଜାୟ ରଖିବା ଉଚିତ । ମିତ୍ର-ମର୍ଯ୍ୟାଦା ରକ୍ଷା କରିବା ସକାଶେ ମୁଁ ଏ ଖୁଦ ଗ୍ରହଣ କରିଛି ।

ଏକ ପକ୍ଷରେ ନିଜ ସ୍ୱାମୀଙ୍କର ମହନୀୟତା ଓ ସାଧୁ ମନୋଭାବ ଓ ଅନ୍ୟ ପକ୍ଷରେ ବନ୍ଧୁର କୃତଘ୍ନତା କଥା ଚିନ୍ତାକରି ବୋଧିସତ୍ତ୍ୱଙ୍କ ସ୍ତ୍ରୀ ଆହୁରି ଆହୁରି କାନ୍ଦିଲେ ।

ଠିକ ଏତିକିବେଳେ ଧର୍ମଶାଳା ପାଖଦେଇ ଗୋଟିଏ ଲୋକ ସହର ଅଭିମୁଖେ ଯାଉଥିଲା । ଏହି ଲୋକଟିକୁ ନିଜେ ଶଙ୍ଖ ଶ୍ରେଷ୍ଠୀ ପଲ୍ଲବ ଶ୍ରେଷ୍ଠୀକୁ ଦାସ ଭାବରେ ଅର୍ପଣ କରିଥିଲେ । ବୋଧିସତ୍ତ୍ୱଙ୍କ ସ୍ତ୍ରୀଙ୍କର କାନ୍ଦଣା ଶୁଣି ସେ ଅଟକି ଗଲା ଓ ଧର୍ମଶାଳା ଭିତରକୁ ଆସିଲା । କିନ୍ତୁ ଧର୍ମଶାଳା ଭିତରେ ନିଜର ପୂର୍ବପରିଚିତ ପ୍ରଭୁ ଓ ପ୍ରଭୁପତ୍ନୀଙ୍କୁ ଦେଖି ସେ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲା, ପ୍ରଭୁ, ଏ ସବୁ ମୁଁ କଣ ଦେଖୁଛି ? ଆପଣ ଏହି ଅବସ୍ଥାରେ ଏଠାରେ କାହିଁକି ? ପୁଣି ଏ ଖୁଦ ଗଣ୍ଠିଲି ଏଠାରେ କାହିଁକି ?

ଶଙ୍ଖ ଶ୍ରେଷ୍ଠୀ ତା ଆଗରେ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ସବୁକଥା ଶୁଣାଇଲେ । ସେ ସବୁକଥା ଶୁଣି ପରିଚିତ ଦାସ କହିଲା, ପ୍ରଭୁ, ଏଥିପାଇଁ ଚିନ୍ତା କରନ୍ତୁ ନାହିଁ । ମୋ' ଘରକୁ ଆସନ୍ତୁ । ମୋ'ପରି ଦାସ ଥାଉ ଥାଉ ଆପଣ କଷ୍ଟ ଭୋଗିବେ, ଏହା କିପରି କଥା ?

ଦାସଟି ନିଜର ପୂର୍ବର ପ୍ରଭୁ ଓ ପ୍ରଭୁପତ୍ନୀକୁ ନିଜଘରକୁ ଆଣି ଉଚ୍ଚ ଆସନରେ ବସାଇଲା । ସୁଗନ୍ଧିତ ଜଳରେ ସ୍ନାନ କରାଇଲା । ପିନ୍ଧିବାକୁ ନୂତନ ବସ୍ତ୍ର ଆଣିଦେଲା । ଦିବ୍ୟ ଭୋଜନ ଓ ଆରାମର ବ୍ୟବସ୍ଥା କଲାପରେ ଅନ୍ୟ ଦାସମାନଙ୍କ ନିକଟକୁ ଆସି କହିଲା, ଭାଇ-ମାନେ, ଆମର ପୂର୍ବ ପ୍ରଭୁ ଶଙ୍ଖ ଶ୍ରେଷ୍ଠୀ ପଲ୍ଲବ ଶ୍ରେଷ୍ଠୀ କର୍ତ୍ତୃକ ତିରସ୍କୃତ ହୋଇ ଫେରି ଆସିଛନ୍ତି । ଯେଉଁବେଳେ ଏହି କୃତଘ୍ନ ଶ୍ରେଷ୍ଠୀ ଉପରେ ବିପତ୍ତି ପଡ଼ିଥିଲା, ଆମର ପ୍ରଭୁ ଶଙ୍ଖ ଶ୍ରେଷ୍ଠୀ ନିଜ ଧନସମ୍ପଦରୁ ଅଧେ ତାକୁ ଦେଇ ଦେଇଥିଲେ । କିନ୍ତୁ ନୀଚ ପଲ୍ଲବ ଶ୍ରେଷ୍ଠୀ ତାଙ୍କୁ କେବଳ କିଛି ଖୁଦଦେଇ ବିଦା କରିଦେଲା । ଏମିତି ମିତ୍ରଦ୍ରୋହୀକୁ ଉତ୍ତମ ଶାସ୍ତି ମିଳିବା ଉଚିତ । ଆମେ ଚାଲ ଏହାର ପ୍ରତିକାର କରିବା ।

ଅନ୍ୟ ସମସ୍ତ ଦାସ ଏ କଥାରେ ସହଯୋଗ କଲେ ଓ ସମସ୍ତେ ମିଳିମିଶି ସଂଗଠିତ ହୋଇ ଖୁବ୍ ଉଚ୍ଚ ସ୍ୱରରେ ଏ କଥାର ନିନ୍ଦା କରି କରି ରାଜାଙ୍କ ଦରବାରରେ ପହଞ୍ଚିଲେ । ତାପରେ ସେମାନେ ରାଜାଙ୍କ ଆଗରେ ସବୁକଥା ଜଣାଇ ପ୍ରତିକାର ଚାହିଁଲେ ।

ରାଜା ଶଙ୍ଖ ଶ୍ରେଷ୍ଠୀଙ୍କୁ ପାଖକୁ ଡକାଇ ପ୍ରଶ୍ନ କଲେ, ତୁମେ କଣ ପଲ୍ଲବ ଶ୍ରେଷ୍ଠୀଙ୍କୁ ଚାଳିଶ କୋଟି ସ୍ୱର୍ଣ୍ଣ ମୁଦ୍ରା ଦେଇଛ ?

ଶଙ୍ଖ ଶ୍ରେଷ୍ଠୀ କହିଲେ, କେବଳ ଚାଳିଶ କୋଟି ସ୍ୱର୍ଣ୍ଣମୁଦ୍ରା ନୁହେଁ ମହାରାଜ, ମୋର ସ୍ଥାବର-ଅସ୍ଥାବର ସମ୍ପତ୍ତି ଯାହା ଥିଲା, ତହିଁରୁ ଅଧେ ବି ଦାନ କରିଛି ।

ଏହାଶୁଣି ରାଜା ପଲ୍ଲବ ଶ୍ରେଷ୍ଠୀଙ୍କୁ ଡକାଇ ପ୍ରଶ୍ନ କଲେ, କଣ ଶଙ୍ଖ ଶ୍ରେଷ୍ଠୀ ଯାହା କହୁଛନ୍ତି ସତ କଥା ?

ପଲ୍ଲବ ଶ୍ରେଷ୍ଠୀ ସବୁଆଡକୁ ଥରେ ସତର୍କ ଓ ଭୟାର୍ତ୍ତ ଚାହାଣୀରେ ଚାହିଁଦେଇ ଉତ୍ତର ଦେଲା, ହଁ ମହାରାଜ ! ସବୁ ସତ କଥା ।

ରାଜା ପ୍ରଶ୍ନ କଲେ, ତାହାହେଲେ ଶଙ୍ଖ ଶ୍ରେଷ୍ଠୀଙ୍କୁ ସତ୍କାର କରିବା କଣ ଉଚିତ ନଥିଲା ? କିନ୍ତୁ ସେ ସବୁ ନକରି ଏତେ ଶୀଘ୍ର ସବୁ କଥା ଭୁଲିଗଲୁ କାହିଁକି ? ତୁ ବଡ ନୀଚ ଓ କୃତଘ୍ନ ବ୍ୟକ୍ତି । ତୋଭଳି ପରି ବ୍ୟକ୍ତିକୁ ଦଣ୍ଡ ନ ମିଳିଲେ ସମାଜର ମର୍ଯ୍ୟାଦା କ୍ଷୁଣ୍ଣ ହେବ ।

ଏହାପରେ ରାଜା ମନ୍ତ୍ରୀମାନଙ୍କ ସଙ୍ଗରେ ପରାମର୍ଶ କରି ଆଦେଶ ଦେଲେ, ପଲ୍ଲବ ଶ୍ରେଷ୍ଠୀର ସମସ୍ତ ଧନସମ୍ପଦ ଶଙ୍ଖ ଶ୍ରେଷ୍ଠୀଙ୍କୁ ଦେଇଦିଅ ।

ଏହାଶୁଣି ଶଙ୍ଖ ଶ୍ରେଷ୍ଠୀ ହାତଯୋଡି କହିଲେ, ମୁଁ ଅନ୍ୟର ସମ୍ପଦ ଚାହୁଁନାହିଁ । ଖାଲି ଏତିକି ଚାହେଁ ଯେ, ମୁଁ ଦେଇଥିବା ସମ୍ପତ୍ତି ମୋତେ ମିଳିଯାଉ ।

ନିଜ ଅଂଶ ଧନସମ୍ପଦ ଓ ଦାସଦାସୀ ସଙ୍ଗରେ ନେଇ ବୋଧିସତ୍ତ୍ୱ ରାଜଗୃହକୁ ପ୍ରତ୍ୟାବର୍ତ୍ତନ କଲେ ଓ ନିଜ ବ୍ୟବସାୟ ଆରମ୍ଭ କଲେ । ଏହାପରେ ତାଙ୍କ ଘରେ ସୁଖଶାନ୍ତି ଦେଖାଦେଲା । ସେ ଦାନପୁଣ୍ୟ କରି ସୁଖରେ ରହିଲେ ।






(ଏକ)

ବୋଧିସତ୍ତ୍ୱ ଥରେ ବାରାଣସୀ ନଗରୀରେ ଜଣେ ବିତ୍ତଶାଳୀ ଶ୍ରେଷ୍ଠୀ ଭାବରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ନାମ ରଖାହୋଇଥିଲା ରତ୍ନଦତ୍ତ ଶ୍ରେଷ୍ଠୀ ।

ରତ୍ନଦତ୍ତ ଶ୍ରେଷ୍ଠୀଙ୍କର ଅନେକ ଧନରତ୍ନ । ଖୁବ୍ ବଡ଼ ଘର । ଅନେକ ଦାସଦାସୀ । ବାରାଣସୀ ନଗରୀରେ ତଥା ନଗରୀ ବାହାରେ ବହୁ ପ୍ରତିଷ୍ଠିତ ବ୍ୟକ୍ତି ତାଙ୍କର ବନ୍ଧୁବାନ୍ଧବ । ସେ ଖୁବ୍ ବିଳାସ-ବ୍ୟସନରେ କାଳଯାପନ କରୁଥାନ୍ତି ।

ଦିନେ ରତ୍ନଦତ୍ତଙ୍କ ବିବାହିତା ସ୍ତ୍ରୀ ଗୋଟିଏ ପୁତ୍ର ଜନ୍ମ କଲେ । ଠିକ୍ ସେହି ଦିନ ରତ୍ନଦତ୍ତଙ୍କ ରକ୍ଷିତା ଦାସୀ ମଧ୍ୟ ଆଉ ଏକ ପୁତ୍ର ପ୍ରସବ କଲା । ଦାସୀ ପୁତ୍ରଟି ବେଶ୍ ସୁନ୍ଦର ଓ ସ୍ୱାସ୍ଥ୍ୟବାନ । ସେ ଅବିକଳ ରତ୍ନଦତ୍ତଙ୍କ ବିବାହିତା ସ୍ତ୍ରୀର ସନ୍ତାନ ଭଳି ଦେଖା ଯାଉଥିଲା । ଏହି ଦାସୀ ପୁତ୍ରର ନାମ 'କଟାହକ' ଓ ବିବାହିତା ସ୍ତ୍ରୀର ପୁତ୍ର ନାମ 'ସଂଜୀବକ' ରଖାହେଲା ।

ସେ କାଳର ସାମାଜିକ ପ୍ରଥା ଅନୁସାରେ ବିବାହିତା ସ୍ତ୍ରୀର ପୁତ୍ରକନ୍ୟା ରକ୍ଷିତା ସ୍ତ୍ରୀର ପୁତ୍ରକନ୍ୟା ଅପେକ୍ଷା ଅଧିକ ସମ୍ମାନର ଅଧିକାରୀ ଥିଲେ । ପିତାର ନୀତିସମ୍ମତ ଉତ୍ତରାଧିକାର କେବଳ ବିବାହିତା ସ୍ତ୍ରୀର ପୁତ୍ରକନ୍ୟାମାନଙ୍କୁ ହିଁ ମିଳୁଥିଲା । ତେଣୁ ସେମାନଙ୍କ ସୁଖସ୍ୱାଚ୍ଛନ୍ଦ ତଥା ଶିକ୍ଷାଦୀକ୍ଷା ପ୍ରତି ଅଧିକ ଧ୍ୟାନ ଦିଆ ଯାଉଥିଲା । ରକ୍ଷିତା ଦାସୀର ପୁତ୍ରକନ୍ୟାମାନେ ଉତ୍ତରାଧିକାରରୁ ବଂଚିତ ହେବା ସଙ୍ଗେ ସଙ୍ଗେ, ସୁଖ ସ୍ୱାଚ୍ଛନ୍ଦ ତଥା ଶିକ୍ଷାଦୀକ୍ଷାରୁ ମଧ୍ୟ ବଂଚିତ ହେଉ-ଥିଲେ । ଗୃହର ବିଭିନ୍ନ ଦାୟିତ୍ୱରେ ଏଇ ଦାସୀ ପୁତ୍ରମାନଙ୍କୁ ନିଯୁକ୍ତ କରାଯାଉଥିଲା ।

କ୍ରମେ କଟାହକ ଓ ସଂଜୀବକ ବଡ଼ ହେଲେ ।

ସଂଜୀବକର ଶିକ୍ଷାଦୀକ୍ଷା ପାଇଁ ରତ୍ନଦଣ୍ଡ ସମସ୍ତ ପ୍ରକାର ବ୍ୟବସ୍ଥା କଲେ ମଧ୍ୟ କଟାହକ ପାଇଁ ଅନୁରୂପ ବ୍ୟବସ୍ଥା କରାଗଲା ନାହିଁ । ସଂଜୀବକ ପ୍ରତିଦିନ ଶିକ୍ଷାଲାଭ ଉଦ୍ଦେଶ୍ୟରେ ଗୁରୁ ଗୃହକୁ ଗମନ କଲାବେଳେ, କଟାହକ ସଂଜୀବକର ପୋଥିପତ୍ର ଧରି ତା' ପଛେ ପଛେ ଯାଉଥିଲା ।

ଗୁରୁଦେବ ସଂଜୀବକକୁ ମନଯୋଗ ସହକାରେ ପ୍ରତ୍ୟହ ଶିକ୍ଷାଦାନ କରୁଥିଲେ । କଟାହକକୁ ସେ ଆଦୌ ପଚାରୁ ନ ଥିଲେ । କିନ୍ତୁ କଟାହକ ଗୁରୁଙ୍କର ଶିକ୍ଷା ପ୍ରଦାନ ବେଳେ ସଂଜୀବକର ପାଖରେ ବସି ଅତି ମନଯୋଗ ସହକାରେ ପ୍ରଦତ୍ତ ଶିକ୍ଷାକୁ ଆୟତ୍ତ କରୁଥିଲା ।

କଟାହକର ବୁଦ୍ଧି ଅତି ତୀକ୍ଷ୍ଣ ଥିଲା । ସେ ସଂଜୀବକ ଅପେକ୍ଷା କମ୍ ସମୟ ଭିତରେ ସବୁ ବିଦ୍ୟା ଆୟତ୍ତ କରିନେଉଥିଲା । ତେଣୁ ଅତି ଅଳ୍ପଦିନ ଭିତରେ ସେ ସଂଜୀବକ ଅପେକ୍ଷା ଅଧିକ ବିଦ୍ୟା ଆୟତ୍ତ କରିନେଲା । କେବଳ ସେତିକି ନୁହେଁ, ଗାନ୍ଧର୍ବ ବଦ୍ୟା ଓ ଶିଳ୍ପ ବିଦ୍ୟାରେ ମଧ୍ୟ ସେ ପାରଦର୍ଶିତା ଲାଭ କରିବାରେ ସକ୍ଷମ ହେଲା ।

ଦାସୀପୁତ୍ର କଟାହକର ବୁଦ୍ଧି ଓ ଚତୁରତା ଦେଖି ଶ୍ରେଷ୍ଠୀ ରତ୍ନଦଣ୍ଡ ଖୁବ୍ ସନ୍ତୋଷ ପ୍ରକାଶ କଲେ । ସେ ତାଙ୍କୁ ନିଜର ଭଣ୍ଡାର ଘରର ରକ୍ଷକ ରୂପରେ ନିଯୁକ୍ତ କଲେ ।

କଟାହକ କିଛିଦିନ ମନ ଲଗାଇ କାମ କଲା ସତ, କିନ୍ତୁ ସାରା ଜୀବନ ସେହି ଭଣ୍ଡାର ରକ୍ଷକ ରୂପରେ କାର୍ଯ୍ୟ କରିବାକୁ କେମିତି ତାକୁ ମନେ ମନେ ଖଟ୍‌କା ଲାଗିଲା । କ୍ରମେ ସେ ସେହି ଅବସ୍ଥା ସଂପର୍କରେ ବାରମ୍ବାର ଚିନ୍ତା କରି ବିବ୍ରତ ହୋଇ ଉଠିଲା । କାମଧାମ କରି ରହିବାକୁ ଆଦୌ ସୁଖକର ବୋଧ ହେଲା ନାହିଁ । ଭାବିବାକୁ ଲାଗିଲା, ଭଣ୍ଡାରରକ୍ଷକ କାମଟା ସବୁଠୁ ବଳି ହୀନକାମ । ଦଶା ନିହାତି ମନ୍ଦ ପଡ଼ିଲେ ଏଭଳି କାମ ମିଳିଥାଏ ।

କିନ୍ତୁ କଟାହକ ବୁଦ୍ଧିରେ ଅତି ବିଚକ୍ଷଣ ଥିଲା । ତାର ପେଟରେ ଥିଲା ବିଦ୍ୟା ଓ ମୁଣ୍ଡରେ ଥିଲା ବୁଦ୍ଧି । ସବୁ ବୁଦ୍ଧି ବିଦ୍ୟା ଲଗାଇ ଶେଷକୁ ସେ ସ୍ଥିର କଲା ଯେ, ବିଦେଶକୁ ଯାଇ ସ୍ୱାଧୀନ ଭାବରେ ଜୀବିକାର୍ଜନ କରିବ । ଏହି ସିଦ୍ଧାନ୍ତରେ ଉପନୀତ ହୋଇ ସେ ମନକୁ ମନ ବହୁତ କିଛି ଭାବିନେଲା ।

କଟାହକର ମନେ ପଡ଼ିଲା, ମଗଧ ଦେଶରେ ରତ୍ନଦଣ୍ଡଙ୍କର ଜଣେ ବନ୍ଧୁ ଅଛନ୍ତି । ତାଙ୍କ ନାମ ମଣିଭଦ୍ର । ରତ୍ନଦଣ୍ଡଙ୍କ ପରି ସେ ମଧ୍ୟ ମଗଧ ଦେଶର ଜଣେ ବିଖ୍ୟାତ ଶ୍ରେଷ୍ଠୀ । ଧନରତ୍ନ, ପ୍ରଭାବ ପ୍ରତିପତ୍ତିରେ ସେ ରତ୍ନଦଣ୍ଡଙ୍କର ସମକକ୍ଷ ହେବେ ।

କଟାହକ ସ୍ଥିର କଲା ଯେ ସେ ମଗଧ ଦେଶକୁ ଯାତ୍ରା କରି ମଣିଭଦ୍ରଙ୍କୁ ସାକ୍ଷାତ କରିବ । ତାଙ୍କ ନିକଟରୁ ସମ୍ମାନ ଲାଭ କରିବା ସକାଶେ ରତ୍ନଦତ୍ତଙ୍କର ଗୋଟିଏ ଜାଲ ଚିଠି ସଙ୍ଗରେ ନେଇଯିବ । ଏହି କୂଟଫନ୍ଦିକୁ କାର୍ଯ୍ୟରେ ଲଗାଇବା ପାଇଁ ସେ ନିଜକୁ ସଂଜୀବକ ପରିଚିତ କରାଇବ ।

କଟାହକ ଅନ୍ୟର ହସ୍ତାକ୍ଷର ଜାଲ କରିବାରେ ଅତ୍ୟନ୍ତ ଧୁରନ୍ଧର । ସେ ଅବିକଳ ରତ୍ନଦତ୍ତଙ୍କ ଅକ୍ଷର ଅଭ୍ୟାସ କରିବାକୁ ଲାଗିଲା ଓ କିଛି ସମୟ ପରେ ତହିଁରେ ସଫଳତା ହାସଲ କରି ମଣିଭଦ୍ରଙ୍କ ନିକଟକୁ ଖଣ୍ଡେ ପତ୍ର ଲେଖିଲା । ଚିଠିରେ ଲେଖିଥିଲା—

ପ୍ରିୟ ବନ୍ଧୁ,

ବହୁଦିନ ହେଲା ତୁମ ସଙ୍ଗେ ସାକ୍ଷାତ ହେଲା ନାହିଁ କି କୁଶଳ ସମ୍ବାଦ ମିଳିଲା ନାହିଁ । ଆଶାକରେ ସପରିବାର କୁଶଳ ଥିବ ।

ମୋର ପୁତ୍ର ସଂଜୀବକକୁ ଏଇ ପତ୍ର ଦେଇ ତୁମ ପାଖକୁ ପଠାଉଛି । ସେ ବହୁବିଦ୍ୟା ଓ ବୁଦ୍ଧି ହାସଲ କରି ପାରିଛି । ଦୂର-ଦେଶରେ ବାଣିଜ୍ୟ ବ୍ୟବସାୟ କରିବା ପାଇଁ ତାର ଖୁବ୍ ଇଚ୍ଛା । ଏଣୁ ତୁମ ପାଖକୁ ତାକୁ ପଠାଇଲି । ତୁମେ ତାକୁ ପୁତ୍ର ଭାବି ପାଖରେ ରଖିବ ଓ ବାଣିଜ୍ୟ ବ୍ୟବସାୟ ସଂପର୍କରେ ଶିକ୍ଷାଦେବ ବୋଲି ଆଶା କରୁଛି ।

ଯଦି ଉପଯୁକ୍ତ ମନେକର, ସଂଜୀବକକୁ ନିଜର ଜାମାତା କରିପାର । ଏଥିରେ ମୁଁ ଖୁସି ହେବି । ପରେ ସୁବିଧାନୁଯାୟୀ ତୁମ ସଙ୍ଗେ ସାକ୍ଷାତ କରିବାକୁ ମଗଧ ଯାତ୍ରା କରିବି ଓ ପୁତ୍ରକନ୍ୟାଙ୍କୁ ସଙ୍ଗରେ ନେଇ ଆସିବି । ଇତି ।

ତୁମର ବନ୍ଧୁ
ରତ୍ନଦତ୍ତ ଶ୍ରେଷ୍ଠୀ
ବାରାଣସୀ

ଏହି ପତ୍ର ଖଣ୍ଡକ ସଙ୍ଗରେ ନେଇ କଟାହକ ବାରାଣସୀ ତ୍ୟାଗ କଲା ଓ କିଛିଦିନ ପରେ ମଗଧରେ ପହଞ୍ଚିଲା । ସେଠାରେ ସେ ଲୋକଙ୍କୁ ପଚାରି ମଣିଭଦ୍ରଙ୍କ ସଙ୍ଗରେ ସାକ୍ଷାତ କଲା ଓ ରତ୍ନଦତ୍ତଙ୍କ ତରଫରୁ ଲେଖା ହୋଇଥିବା ଜାଲ ଚିଠି ଖଣ୍ଡକ ମଣିଭଦ୍ରଙ୍କ ହସ୍ତରେ ସମ୍ଭ୍ରମତା ସହକାରେ ଅର୍ପଣ କଲା ।

ମଣିଭଦ୍ରଙ୍କର ଏକ ଯୁବତୀ କନ୍ୟା ପାଖରେ ଥାଏ । ତାରି ସକାଶେ ଯୋଗ୍ୟବର ପାତ୍ରଟିଏ ସେ ଖୋଜି ବୁଲୁଥାନ୍ତି । ସୁଯୋଗ୍ୟ ପାତ୍ରର ସନ୍ଧାନ ନ ପାଇ ବଡ ବ୍ୟସ୍ତ ଭାବରେ କାଳ କଟାଉଥାନ୍ତି ।

ଠିକ୍ ଏତିକିବେଳେ ରତ୍ନଦତ୍ତଙ୍କ ଜାଲ ଚିଠି ଖଣ୍ଡକ ତାଙ୍କୁ ଖୁବ୍ ଆନନ୍ଦ ଦେଲା । ରତ୍ନଦତ୍ତଙ୍କ ପରି ବନ୍ଧୁଙ୍କର ପୁତ୍ରଟିକୁ ରୂପ, ଗୁଣ, ବୁଦ୍ଧି

ଓ ଆଭିଜାତ୍ୟ ସବୁ ଦିଗରୁ ସୁଯୋଗ୍ୟ ମନେ କରି ତାହାକୁ ଅତି ଆଦର କରି ପାଖରେ ରଖିଲେ ଓ ନିଜ ଯୋଗ୍ୟା କନ୍ୟାଟିକୁ ତାହାରି ହାତରେ ସମର୍ପଣ କରିବାକୁ ସ୍ଥିର କଲେ ।

ମଣିଭଦ୍ରଙ୍କର ଯୁବତୀ କନ୍ୟାର ନାମ କନକପ୍ରଭା । ସେ ରୂପ, ଗୁଣ ଉଭୟରେ ସମାନ ଥିଲା ଓ ଅଲିଅଳରେ କାଳ କଟାଉଥିଲା ।

ଅଳ୍ପଦିନ ମଧ୍ୟରେ କନକପ୍ରଭା ସଙ୍ଗରେ ସଂଜୀବଙ୍କର ଜାଳ-ନାମଧାରୀ ଦାସୀପୁତ୍ର କଟାହକର ବିବାହ କାର୍ଯ୍ୟ ସମ୍ପୂର୍ଣ୍ଣ ହେଲା । ମଣିଭଦ୍ରଙ୍କ ଜାମାତା ରୂପେ ପରିବାର ଭିତରେ ସେ ଶ୍ରେଷ୍ଠ ସମ୍ମାନ ଲାଭକଲା ।

ଏଥର କଟାହକର ଜୀବନଯାତ୍ରା ଆଡମ୍ବର ବହୁଳ ହୋଇ ଉଠିଲା । ଦିନକୁ ଦିନ ତାର ଔଦ୍ଧତ୍ୟ ଓ କ୍ରୋଧ ବଢ଼ିବାରେ ଲାଗିଲା । ଶ୍ୱଶୁର, ଶାଶୁ ଇତ୍ୟାଦି ସମସ୍ତ ମାନ୍ୟଗନ୍ୟ ବ୍ୟକ୍ତିମାନଙ୍କୁ ଅବଜ୍ଞା ପ୍ରଦର୍ଶନ କଲା । ଶ୍ରଦ୍ଧେୟା ସ୍ତ୍ରୀକୁ ଅନାଦର କଲା ଓ ଚାକର ଚାକରାଣୀ-ମାନଙ୍କୁ ହେୟଜ୍ଞାନ କଲା । ମଗଧର କୌଣସି ଜିନିଷ ତାକୁ ତୃପ୍ତିକର ମନେ ହେଲା ନାହିଁ । ସବୁ କଥାରେ ସମସ୍ତଙ୍କର ଦୋଷ ଧରି ବସିଲା ।

କଟାହକର ବ୍ୟବହାର ଅତ୍ୟନ୍ତ ରୁକ୍ଷ ହେଲେ ମଧ୍ୟ ଭାଗ୍ୟକୁ ଆଦରି ସମସ୍ତେ ନୀରବ ରହନ୍ତି । କେହିହେଲେ ତା ମୁହଁରେ କିଛି ପ୍ରତିବାଦ ବା ପ୍ରତିରୋଧ କରନ୍ତି ନାହିଁ ।

ମଗଧ ଦେଶକୁ ନିନ୍ଦନ କରି ସେ ଅନେକ ଅବାଞ୍ଛିତ କଥା କହେ । ବାରଣସୀକୁ ପ୍ରଶଂସା କରି ଅନେକ ମନଗଢ଼ା କଥା ଶୁଣାଇଯାଏ । ସେ କହେ, ବାରଣସୀରେ ଘିଅରେ ଯେତିକି ମିଠା ଅଛି ମଗଧ ଘିଅରେ ସେତିକି ଦୁର୍ଗନ୍ଧ ଅଛି । ମଗଧର ଧୋବା ଲୁଗା ଧୋଇ ଜାଣେ ନାହିଁ । ମଗଧର ପୂଜାରୀକୁ ବେଷବିଦ୍ୟା ଆଦୌ ଜଣାନାହିଁ ।

କଟାହକ ସ୍ତ୍ରୀ କନକପ୍ରଭାକୁ ଅତି ହୀନ ପ୍ରତିବାଦିତ କରିବା ଉଦ୍ଦେଶ୍ୟରେ କହେ ବାରଣସୀରେ ଆମର ଘର, ଧନଦୌଲତ ଦେଖିଲେ ତୁମ ଆଖି ଝଲସି ଉଠିବ । ଏଠାରେ ଅଛି କଅଣ ? ଆମର ଯେତେ ଧନ ସମ୍ପତ୍ତି ଅଛି, ତା' ସଙ୍ଗରେ ତୁମ ବାପାଙ୍କର ଧନଦୌଲତ ପାସଙ୍ଗରେ ପଡ଼ିବ ନାହିଁ ।

ବିଚାରୀ କନକପ୍ରଭା କିଛି କହେ ନାହିଁ । ସ୍ୱାମୀଙ୍କୁ ସେ ଖୁବ୍ ଡରେ ତାଙ୍କ କଥାରେ ଦ୍ୱିରୁକ୍ତି ପ୍ରକାଶ କରେ ନାହିଁ ।

( ଦୁଇ )

କଟାହକ କାହାରିକୁ କିଛି ନ ଜଣାଇ ବାରଣସୀରୁ ପଳାଇ ଆସିଥିଲା । ରତ୍ନଦତ୍ତ ଶ୍ରେଷ୍ଠୀ ତାକୁ ଖୋଜିବାପାଇଁ ନାନା ଦିଗ ଓ ନାନା ଦେଶକୁ ଚର ପଠାଇଲେ ।

ଜଣେ ଚର ବାରାଣସୀକୁ ଆସି କଟାହକକୁ ମଣିଭଦ୍ର ଶ୍ରେଷ୍ଠୀଙ୍କ ଜାମାତା ହୋଇଥିବାର ଦେଖିଲା ଓ ରତ୍ନଦତ୍ତଙ୍କୁ ଯାଇ ସବୁକଥା ଜଣାଇଲା ।

ଏ ସମ୍ବାଦ ପାଇ ରତ୍ନଦତ୍ତ କ୍ରୋଧ ପ୍ରକାଶ କଲେ ଓ କଟାହକକୁ ଉଚିତ ଶାସ୍ତି ଦେବା ସକାଶେ ମଗଧ ଯାତ୍ରା କରିବାକୁ ସ୍ଥିର କଲେ ।

ରତ୍ନଦତ୍ତ ମଗଧ ଯାତ୍ରା କରିବା ସକାଶେ ନିଜକୁ ପ୍ରସ୍ତୁତ କରି ନେଇ ଜଣେ ବାର୍ତ୍ତାବହକୁ ମଣିଭଦ୍ରଙ୍କ ନିକଟକୁ ପ୍ରେରଣ କଲେ । ବାର୍ତ୍ତାବହ ନିକଟରୁ ପ୍ରିୟ ବନ୍ଧୁଙ୍କର ଆଗମନର ସମ୍ବାଦ ପାଇ ମଣିଭଦ୍ର ଖୁବ୍ ଖୁସି ହୋଇ ତାଙ୍କୁ ସ୍ୱାଗତ ଜଣାଇବା ସକାଶେ ନାନାବିଧ ଆୟୋଜନରେ ଲାଗି ପଡ଼ିଲେ । କାରଣ ରତ୍ନଦତ୍ତ କେବଳ ପୂର୍ବପରି ବନ୍ଧୁ ନଥିଲେ, ଏବେ ସେ ଆତ୍ମୀୟ ପାଲଟି ଯାଇଥିଲେ ।

ଏଣେ ରତ୍ନଦତ୍ତଙ୍କ ଆଗମନ ସମ୍ବାଦ ଶୁଣି କଟାହକ ଭୟରେ କଳାକାଠ ପଡ଼ିଗଲା । ସେ ନିଶ୍ଚିତ ଭାବରେ ବୁଝିପାରିଲା ଯେ, ରତ୍ନଦତ୍ତ ମଗଧରେ ପହଞ୍ଚିବା ସଙ୍ଗେ ସଙ୍ଗେ ତାର ଅସଲ ରୂପ ଧରାପଡ଼ିଯିବ । ସମସ୍ତେ ଜାଣିନେବେ ଯେ ସେ ସଂଜୀବକ ନୁହେଁ, ଦାସୀ ପୁତ୍ର କଟାହକ ତାର ସମସ୍ତ ଶଠତା ପଦାକୁ ଫୁଟି ବାହାରିଲେ ଅବସ୍ଥା ଅତି ଖରାପ ଦିଗକୁ ଗତି କରିବ । ତେଣୁ ତାର ସମସ୍ତ ବୁଦ୍ଧି ବିଦ୍ୟା ଲଗାଇ ସେ ଆସନ୍ନ ବିପଦରୁ ଉଦ୍ଧାର ପାଇବାକୁ ଉପାୟ ସ୍ଥିର କରିବାକୁ ଲାଗିଲା । ସ୍ଥିର କଲା, ଆଗୁଆ ଯାଇ ରତ୍ନଦତ୍ତଙ୍କୁ ଦେଖା କରିବ ଓ ତାଙ୍କର ପାଦତଳେ ପଡ଼ି ସମସ୍ତ ଦୋଷପାଇଁ କ୍ଷମା ମାଗିନେବ । ରତ୍ନଦତ୍ତ ଯେଉଁ ଧରଣର ମଣିଷ, ସେ ତାକୁ ଅକ୍ଲେଶରେ କ୍ଷମା ଦେବେ ।

ଏହା ସ୍ଥିର କରିସାରି କଟାହକ ଶ୍ୱଶୁର ମଣିଭଦ୍ରଙ୍କ ନିକଟରେ ପହଞ୍ଚିଲା ଓ କହିଲା, ମୋ ବାପା ଏତେ ଦୂରରୁ ମଗଧକୁ ଆସୁଛନ୍ତି । ତାଙ୍କୁ ଯାଇଁ ରାସ୍ତାରୁ ପାଛୋଟି ଆଣିବା ପୁତ୍ରୋଚିତ ଧର୍ମ ହେବ । ଆପଣଙ୍କ ତରଫରୁ କିଛି ଉପହାର ନେଇ ତାଙ୍କ ସଙ୍ଗରେ ସାକ୍ଷାତ କରିବା ଉଚିତ ବୋଲି ମୁଁ ମନେ କରୁଛି ।

କଟାହକର ପ୍ରସ୍ତାବକୁ ମଣିଭଦ୍ର ସର୍ବାନ୍ତକରଣରେ ସମର୍ଥନ କରିବା ସଙ୍ଗେ ସଙ୍ଗେ ଭଣ୍ଡାର ଘରୁ ଗଚ୍ଛିତ ଅନେକ ବହୁମୂଲ୍ୟ ମଣି ମୁକ୍ତା ଆଣି କଟାହକ ହସ୍ତରେ ଦେଲେ । କଟାହକ ଉକ୍ତ ବହୁ ମୂଲ୍ୟର ଉପଢୌକନ ସଙ୍ଗରେ ନେଇ ରତ୍ନଦତ୍ତଙ୍କୁ ରାସ୍ତାରେ ଯାଇ ସାକ୍ଷାତ କଲା । ସେ 'ଶୋଣ' ନଦୀର ଅପର ପାର୍ଶ୍ୱରେ ବିଶ୍ରାମ ନେଉଥିବା ରତ୍ନଦତ୍ତଙ୍କ୍ର ସମସ୍ତ ଉପହାର ଉପଢୌକନ ଅର୍ପଣ କରି ତାଙ୍କ ପାଦତଳେ ପଡ଼ି କହିଲା, ଆପଣ ମୋତେ କ୍ଷମା ନ କଲେ ମୁଁ ବଡ଼ ବିପଦରେ ପଡ଼ିଯିବି । ମୁଁ ଏଠାରେ ଆପଣଙ୍କ ପୁତ୍ର ସଂଜୀବକ ବୋଲି ପରିଚୟ ଦେଇ ଶ୍ରେଷ୍ଠୀ କନ୍ୟା କନକପ୍ରଭାକୁ ବିବାହ କରିଛି । ଆପଣଙ୍କ ଜାଲ ଚିଠି ମଣିଭଦ୍ରଙ୍କୁ ଦେଇଛି । ସମସ୍ତ କଥା ଯଦାରେ

ପଡ଼ିଗଲେ ମୋ ଜୀବନ ବ୍ୟର୍ଥ ହେବ । ମୁଁ ନିଶ୍ଚୟ ବିଷପାନ କରି ଆତ୍ମହତ୍ୟା କରିଦେବି । ମୋର ଜୀବନରକ୍ଷା ଏବେ ଆପଣଙ୍କ ହସ୍ତରେ । ଯଦି ଆପଣ ଦାସୀପୁତ୍ର କଟାହକ ବୋଲି ପରିଚୟ ନଦେଇ ନିଜ ପୁତ୍ର ସଂଜୀବକ ବୋଲି କହିବେ, ତେବେ ମୋର ଜୀବନଧାରଣ ସମ୍ଭବ ହେବ ।

ରତ୍ନଦତ୍ତ ବଡ଼ ଅଡୁଆରେ ପଡ଼ିଗଲେ । ଗୋଟିଏ ପାଖରେ ମିଛକୁ ସତ ବୋଲି ସ୍ୱୀକାର କରିନେବା ଓ ଅନ୍ୟ ପାଖରେ ଜଣକର ଜୀବନ ମରଣ ସମସ୍ୟା ଜଡ଼ିତ । ସେ ବହୁ ଭାବିଚିନ୍ତି ମନ୍ତବ୍ୟ ଦେଲେ ଯେ, ସେ କଟାହକର ପ୍ରାର୍ଥନା ପୂରଣ କରିବେ ।

ଯଥାସମୟରେ ରତ୍ନଦତ୍ତ ବନ୍ଧୁ ଗୃହରେ ପ୍ରବେଶ ହେଲେ । ତାଙ୍କୁ ଦେଖି ମଣିଭଦ୍ର ଖୁବ୍ ଆନନ୍ଦ ହେଲେ ଓ ଆଦର ଅଭ୍ୟର୍ଥନାରେ ତାଙ୍କୁ ଆପ୍ୟାୟିତ କଲେ ।

ରତ୍ନଦତ୍ତଙ୍କ ଉପସ୍ଥିତିରେ କଟାହକ କରଯୋଡ଼ି ରହିଲା । ପ୍ରତିଦିନ ଛାଇ ପରି ତାଙ୍କ ସଙ୍ଗେ ସଙ୍ଗେ ରହି ଭୃତ୍ୟ ପରି ସେବା କରିବାରେ ଲାଗିଲା । କଟାହକର କାର୍ଯ୍ୟ ଦେଖି ମଣିଭଦ୍ରଙ୍କ ପରିବାର ଲୋକମାନେ ଆଶ୍ଚର୍ଯ୍ୟ ହେଲେ । ପଡ଼ୋଶୀମାନେ ବି କଟାହକର ସ୍ୱଭାବରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଆସିଛି ବୋଲି ଉପଲବ୍ଧି କଲେ । ସମସ୍ତଙ୍କର ଧାରଣା ହେଲା କଟାହକ ଯାହା ହୋଇଥାଉ ନା କାହିଁକି ସେ ପ୍ରକୃତରେ ଜଣେ ସଚ୍ଚୋଟ ପିତୃଭକ୍ତ ।

ରତ୍ନଦତ୍ତ ବନ୍ଧୁ ଗୃହରେ ପରମ ଆନନ୍ଦରେ କିଛିଦିନ ପାଇଁ ବିଶ୍ରାମ ଗ୍ରହଣ କଲେ । ଦିନେ ନିଭୃତରେ ବଧୂ କନକପ୍ରଭାକୁ ପାଖକୁ ଡାକି କଟାହକର ବ୍ୟବହାର ସମ୍ପର୍କରେ ପ୍ରଶ୍ନ କଲେ ।

ବୁଦ୍ଧିମତୀ କନକପ୍ରଭା ରତ୍ନଦତ୍ତଙ୍କୁ କଟାହକର ବ୍ୟବହାର ସମ୍ପର୍କରେ ସୂଚନା ଦେବାକୁ ଯାଇ କହିଲା ଯେ, ତାଙ୍କର ସବୁ ବ୍ୟବହାର ଭଲ । କିନ୍ତୁ ଦୋଷ ଭିତରେ ଏତିକି ଯେ, ସେ ମଗଧର ପ୍ରତିଟି ଜିନିଷକୁ ବାରଣସୀ ସାଙ୍ଗରେ ତୁଳନା କରି ନାପସନ୍ଦ କରୁଛନ୍ତି । ଏପରିକି ମଗଧର ଗୁଆ ଘିଅକୁ ମଧ୍ୟ ଦୁର୍ଗନ୍ଧ ବୋଲି ଖୁଣୁଛନ୍ତି ।

ଏହାଶୁଣି ରତ୍ନଦତ୍ତ କଟାହକ ଉପରେ ମନେ ମନେ ଖୁବ୍ ବିରକ୍ତ ହେଲେ । ଭାବିଲେ ସଂଜୀବକ ହୋଇଥିଲେ ଏଭଳି ରୁକ୍ଷ ସ୍ୱଭାବ ପ୍ରକଟ କରି ନଥାନ୍ତା । ନିଜ ଭଦ୍ର ବ୍ୟବହାରରେ ସମସ୍ତଙ୍କ ମନ କିଣି ନେଇଥାନ୍ତା । ଦାସୀପୁତ୍ର କଟାହକ ଭଦ୍ର ବ୍ୟବହାର ଶିକ୍ଷା କରିନାହିଁ । ସେଇଥିପାଇଁ ଏ ଅଭିଯୋଗ ଆସୁଛି ।

ତଥାପି ରତ୍ନଦତ୍ତ ନିଜର କ୍ଷୁବ୍ଧ ମନୋଭାବକୁ ଗୋପନ ରଖି କନକପ୍ରଭାକୁ କହିଲେ ମା' ତୋତେ ମୁଁ ଗୋଟିଏ ଶ୍ଳୋକ ଶିଖାଇ

ଦେବି । ତୋର ସ୍ୱାମୀ ମଗଧର କୌଣସି ଜିନିଷକୁ ନାପସନ୍ଦ କରୁଥିବା ଦେଖିଲେ, ତୁ ଏହି ଶ୍ଳୋକଟିକୁ ଆବୃତ୍ତି କରିଦେବୁ । ଶ୍ଳୋକ ଶୁଣି ତୋ ସ୍ୱାମୀ କୌଣସି ଜିନିଷକୁ ଆଉ ନାପସନ୍ଦ କରିପାରିବ ନାହିଁ ।

ରତ୍ନଦତ୍ତ ସେ ଶ୍ଳୋକଟିକୁ କନକପ୍ରଭକୁ ଶିଖାଇ ଦେଲେ । ତାର ଅର୍ଥ ହେଲା, ମଗଧ ଦେଶର ଜିନିଷ ଅସ୍ୱାଦ ଓ ଅସୁନ୍ଦର ହେବା ମୂଳରେ କଟାହକ ରହିଛି । ତେଣୁ ବାରାଣସୀ ପୁରୀରୁ କଟାହକକୁ ଶୀଘ୍ର ନେଇ ଆସ । ସେ ରାନ୍ଧିଲେ ବା ତାରି ହାତ ବାଜିଲେ ସବୁ ସୁନ୍ଦର ଓ ସ୍ୱାଦ ଲାଗିବ । ମଗଧ ଦେଶର କୌଣସି ଜିନିଷ ଅପସନ୍ଦ ହେବ ନାହିଁ ।

ଏହି ଶ୍ଳୋକ କଟାହକର ମୁଖବନ୍ଦ କରିବାକୁ ଯେ ଉଦ୍ଦିଷ୍ଟ ଏ କଥା କନକପ୍ରଭ ବୁଝି ନପାରିଲେ ମଧ୍ୟ, ସେ ସ୍ୱାମୀଙ୍କର ମନ ତଥା ଆଚରଣ ବ୍ୟବହାରରେ ପରିବର୍ତ୍ତନ ଆଣିବା ଉଦ୍ଦେଶ୍ୟରେ ସେତକ ମୁଖସ୍ଥ କରିନେଲା ।

କିଛିଦିନ ପରେ ରତ୍ନଦତ୍ତ ମଗଧ ଛାଡି ବାରାଣସୀକୁ ଫେରିଗଲେ । ରତ୍ନଦତ୍ତଙ୍କ ଅନୁପସ୍ଥିତିରେ କଟାହକର ଦୌରାତ୍ମ୍ୟ ଆହୁରି ବଢିଗଲା । ସେ ମନେକଲା, ରତ୍ନଦତ୍ତ ଯେତେବେଳେ ତାକୁ ନିଜ ପୁତ୍ର ସଂଜ୍ଞାବକ ବୋଲି ସ୍ୱୀକାର କରି ଯାଇଛନ୍ତି, ତାର ଆଉ କୌଣସି କଥାରେ ଭୟ ନାହିଁ ।

ଦିନେ ରତ୍ନଦତ୍ତ ଖାଇ ବସିଥାଏ ଓ କନକପ୍ରଭ ପାଖରେ ବସି ପଙ୍ଖା କରୁଥାଏ । ଦିବ୍ୟ ସୁନ୍ଦର ଭୋଜନ ପ୍ରସ୍ତୁତ ହୋଇଥାଏ । କଟାହକ ମାଂସ ଖଣ୍ଡେ ପାଟିକୁ ନେଉ ନେଉ ଘୃଣାରେ ନାକ ଟେକିଲା ଓ ମନ୍ତବ୍ୟ ଦେଲା, ଛି, କି ଦୁର୍ଗନ୍ଧ ମାଂସ । ମଗଧର ଚମାରମାନେ କେବଳ ଏଭଳି ମାଂସ ଖାଆନ୍ତି । ମାତ୍ର ବାରଣସୀର ଶ୍ରେଷ୍ଠୀ ପାଇଁ ଏହା ଅଖାଦ୍ୟ ।

ଏହାଶୁଣି କନକପ୍ରଭ ପରି ସ୍ୱାମୀଭକ୍ତ ଗୃହିଣୀର ମଧ୍ୟ ଧୈର୍ଯ୍ୟ ଚ୍ୟୁତି ଘଟିଲା । ସେ ରତ୍ନଦତ୍ତଙ୍କ ପ୍ରଦତ୍ତ ଶ୍ଳୋକଟିକୁ ସ୍ମରଣ କଲା ଓ ପ୍ରକାଶ୍ୟରେ ଆବୃତ୍ତି କଲା ।

ଶ୍ଳୋକଟି ଶୁଣି କଟାହକର ତାଳୁକ ଶୁଖିଗଲା । ସେ ସ୍ପଷ୍ଟରୂପେ ବୁଝିପାରିଲା ଯେ, ଶ୍ରେଷ୍ଠୀ ରତ୍ନଦତ୍ତ ହିଁ କନକପ୍ରଭକୁ ଏହା ଶିଖାଇ ଦେଇ ଯାଇଛନ୍ତି । ସେ ଆଉ ପାଟି ତୁଣ୍ଡ କରିବାକୁ ସାହସ କଲାନାହିଁ । ସେ ନାକ ଟେକା, ମୁହଁ ଛିଞ୍ଚତା ପ୍ରଭୃତି ଦୁର୍ଗୁଣ ସବୁ ପରିତ୍ୟାଗ କରି ଚୁପ୍‌ଚାପ ସବୁ ଖାଇଗଲା ।

ଏହିପରି ଭବରେ ଶ୍ରେଷ୍ଠୀରୂପୀ ବୁଦ୍ଧଦେବ ଖଳଲୋକ କଟାହକକୁ ଉଚିତ ଶିକ୍ଷାଦେଲେ । ସେହି ଶ୍ଳୋକ ଶୁଣିବା ପରଠୁ କଟାହକ ତାର ଦୁଷ୍ଟ ପ୍ରକୃତି ପରିତ୍ୟାଗ କରି ଶାନ୍ତ ଓ ସଂଯତ ହେଲା ।

